

# ଆଦିଜ୍ୟୋତି ହରିହର

ଡକ୍ଟର ବିକ୍ରମ ଦାସ

Digitized by PPRACHIN, SOA

# ଆଦିଜ୍ୟୋତି ହରିହର

( ଉତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କ
ମାନସ ଗୁରୁ,
ଆଦିଶିକ୍ଷାବିତ୍, ବାଗ୍ମୀ, ଆଦିଜ୍ୟୋତି,
ପଣ୍ଡିତ ହରିହର ଦାସ ଶର୍ମା )

ଲେଖକ :
ଡକ୍ଟର ବିକ୍ରମ ଦାସ



କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର

Digitized by PPRACHIN, SOA

# ଆଦିଜ୍ୟୋତି ହରିହର

ପ୍ରକାଶିକା :

**ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର**

କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
ବାଲୁବଜାର, କଟକ-୭୫୩୦୦୨

ପ୍ରକାଶନ ଉପଦେଷ୍ଟା :

**ଡ: କୃଷ୍ଣପ୍ରସାଦ ମିଶ୍ର**

ପ୍ରଥମ ସଂସ୍କରଣ—୧୯୯୨

ମୁଦ୍ରଣ :

**ଆନନ୍ଦ ପ୍ରେସ୍**

ପିଠାପୁର, କଟକ-୧

**ମୂଲ୍ୟ—୧୨-୦୦**

# ADIJYOTI HARIHARA

**Dr. Bikram Das**

Publisher :

**Smt. Annapurna Mishra**

Cuttack Students' Store
Balubazar, Cuttack-2

Publication Adviser :

**Dr. K. P. Mishra**

First Edition—1992

**Price Rs. 12 00**

Digitized by PPRACHIN, SOA

# ମୁଖବନ୍ଧ

ଓଡ଼ିଶାର ଅତି ଦୁର୍ଦ୍ଦିନ 'ନଅଙ୍କ ଦୁର୍ଭିକ୍ଷ' ସମୟରେ ହରିହରଙ୍କ ପରି ଜଣେ ବରିଷ୍ଠ ମହାପୁରୁଷ ତାଙ୍କର ଅତ୍ୟଳ୍ପ ଜୀବନକାଳ ଭିତରେ ଓଡ଼ିଆଙ୍କ ପାଇଁ ଶିକ୍ଷା ଓ ସଂସ୍କାରର ପ୍ରଥମ ଦୀପ ଜଳାଇବାକୁ ଯାଇ ଜାତି ପାଇଁ ସର୍ବସ୍ୱ ହୋଇଥିବା, ଅତି ଅଳ୍ପ ଲୋକ ଜାଣନ୍ତି । ମାଟିରେ ଘୋଡ଼ାଇ ହୋଇ ପଡ଼ିରହିଥିବା ହୀରାଖଣ୍ଡ ପରି ଦେଢ଼ ଶତାବ୍ଦୀ ଧରି ସେ ଲୋକ ଲୋଚନର ଅଗୋଚରରେ ରହି ଯାଇଛନ୍ତି । ଏତେବର୍ଷ ପରେ ସେପରି ଏକ ସମ୍ପଦକୁ ଅନୁସନ୍ଧାନ କରି ଜାତି ସାମନାରେ ଉପସ୍ଥାପିତ କରିବା ପାଇଁ ଏ କ୍ଷୁଦ୍ର ପୁସ୍ତିକା ଦ୍ୱାରା ଉଦ୍ୟମ ମାତ୍ର କରାଯାଇଛି ।

ପୂର୍ବତନ ଆଇ. ଏ. ଏସ୍. ଗବେଷକ ଜଗନ୍ନାଥ ଦାସ ପଣ୍ଡିତ ହରିହରଙ୍କ ସମ୍ବନ୍ଧରେ ତାଙ୍କ 'ଦେଶ କାଳ ପାତ୍ର' ପୁସ୍ତକରେ ଲେଖିଛନ୍ତି, "୧୮୭୫—ପୁରୀ ଧାମରେ ଏଭଳି ପଣ୍ଡିତ କେହି କେବେ ଦେଖି ନ ଥିଲେ । ଯେଉଁ ସମୟରେ ବ୍ରାହ୍ମଣ ଗାଁମାନଙ୍କରେ ଫିକଚ୍ଛ କରି ଲୁଗା ନ ପିନ୍ଧିବା ଲୋକଙ୍କୁ ଧର୍ମଛଡ଼ା କୁହାଯାଉଥିଲା, ଉଚ୍ଚ ଜାତିମାନେ କାଗଜ ଛୁଉଁ ନ ଥିଲେ ଏବଂ ଇଂରାଜୀ ପଢ଼ିବା ଖ୍ରୀଷ୍ଟିଆନ ହେବା ସଙ୍ଗେ ସମାନ ବୋଲି ଧରାହେଉଥିଲା । ସେଇ ସମୟରେ ପଣ୍ଡିତ ହରିହର ଦାସ ସାହେବଙ୍କଭଳି ପ୍ୟାଣ୍ଟ୍ କୋଟ୍ ଜୋତା ପିନ୍ଧୁଥିଲେ । ଇଂରେଜୀ ବହି ପଢ଼ୁଥିଲେ ଏବଂ ଘୋଡ଼ାରେ ଚଢ଼ି ଯିବାଆସିବା କରୁଥିଲେ । ଏଭଳି ଅଦ୍ଭୁତ ବେଶ ପୋଷାକ ଓ ଚାଲି ଚଳନ ସତ୍ତ୍ୱେ ତାଙ୍କୁ ମୁହଁ ଉପରେ-ସମାଲୋଚନା କରିବାକୁ କେହି ସାହସ ପାଉନଥିଲେ, କାରଣ ତାଙ୍କ ସଂସ୍କୃତ ପାଣ୍ଡିତ୍ୟ ବିଷୟରେ କାହାରି ମନରେ ମାତ୍ର ସନ୍ଦେହ ନଥିଲା । ସେ ନବଦ୍ୱୀପ ଓ କଲିକତା ସଂସ୍କୃତ କଲେଜରେ ପାଠ ପଢ଼ିଥିଲେ ଏବଂ ସଂସ୍କୃତରେ ମାତୃଭାଷା ଭଳି ଅନର୍ଗଳ କଥାବାର୍ତ୍ତା କରି ପାରୁଥିଲେ । ସେ ମାତ୍ର ତେଇଶି ବର୍ଷର ଏକ

Digitized by PPRACHIN, SOA

ଯୁବକ ଥିଲେ ମଧ୍ୟ ପୁରୀର ପୁରୁଣା ବୟସ୍କ ପଣ୍ଡିତମାନେ ତାଙ୍କ ସଙ୍ଗରେ ସଂସ୍କୃତ ଜ୍ଞାନର ପ୍ରତିଯୋଗିତା କରିବାକୁ ଡରୁଥିଲେ । ସଂସ୍କୃତ ବ୍ୟତୀତ ହରିହରଙ୍କର ବଙ୍ଗଳା, ହିନ୍ଦି, ଇଂରାଜୀ, ଗ୍ରୀକ୍ ଓ ଲାଟିନ୍ ଭାଷାରେ ମଧ୍ୟ ବ୍ୟୁତ୍ପତ୍ତି ଥିଲା । × × ସେ ସାହେବମାନଙ୍କୁ ଡରୁନଥିଲେ । ସେମାନଙ୍କ ସହିତ ସମାନ ସ୍ତରରେ ଚଳ ପ୍ରଚଳ ହେଉଥିଲେ । ସାହେବମାନେ ତାଙ୍କ ପାଖରେ ପଢ଼ିବାକୁ ତାଙ୍କ ଘରକୁ ଆସୁଥିଲେ । ହରିହର ଦାସଙ୍କର ଏକମାତ୍ର ଜୀବନ-ଲକ୍ଷ୍ୟ ଥିଲା (ଜାତିକୁ ଶିକ୍ଷିତ କରାଇବା) ଓଡ଼ିଶାରେ ସଂସ୍କୃତ ସହିତ ଆଧୁନିକ ଶିକ୍ଷାର ପ୍ରସାର କରାଇବା । × × × (ସେ ତତ୍କାଳୀନ ଅନ୍ୟ ନେତାଙ୍କ ପରି ସରକାରୀ ଚାକିରି କରିବାକୁ ପସନ୍ଦ କରୁ ନ ଥିଲେ) ସେ ଅନେକ ସମୟରେ ଓଡ଼ିଶା ବାହାରକୁ ଚାଲି ଯାଉଥିଲେ । ତାର କାରଣ ଥିଲା, ନିଜର ଭରଣ ପୋଷଣ ପାଇଁ ତଥା ବହି କିଣିବା ପାଇଁ ଓ ସ୍କୁଲ ଚଳାଇବା ପାଇଁ ଯେଉଁ ଟଙ୍କା ଦରକାର ହେଉଥିଲା ତାକୁ ସେ ସଂଗ୍ରହ କରୁଥିଲେ ।

ସେ କଲିକତାରେ ବେଦାନ୍ତ ସମ୍ବନ୍ଧରେ ୩ ଘଣ୍ଟା ସଂସ୍କୃତରେ ବକ୍ତୃତା ଦେବା ପରେ ବଙ୍ଗଳାରେ କହିବା ଅନୁରୋଧକୁ ପ୍ରତ୍ୟାଖ୍ୟାନ କରି ଆଉ ତିନିଘଣ୍ଟା ହିନ୍ଦିରେ ସାରଗର୍ଭକ ବକ୍ତୃତା ଦେଇଥିଲେ । ସେ ବଙ୍ଗ ପ୍ରେସିଡେନ୍‌ସିର ଓଡ଼ିଶା ପାଇଁ ଗଢ଼ାଯାଇଥିବା ପ୍ରଥମ ଶିକ୍ଷା କମିଟିର ସଦସ୍ୟ ଥାଇ ଓଡ଼ିଶା ସାରା ଭର୍ଣ୍ଣାକୁଲର ସ୍କୁଲ ବସାଇବାର ଉଦ୍ୟମ କରିଥିଲେ । ସେଥିପାଇଁ ନିଜ ଗ୍ରାମରେ ନିଜ ଖର୍ଚ୍ଚରେ ଗୋଟିଏ ଭର୍ଣ୍ଣାକୁଲର ବସାଇଥିଲେ । ତାଙ୍କ ମୃତ୍ୟୁର ୩ ବର୍ଷ ପରେ ଜନ୍ମ ହୋଇଥିବା, ତାଙ୍କ ଆଦର୍ଶରେ ଅନୁପ୍ରାଣିତ ପଣ୍ଡିତ ଗୋପବନ୍ଧୁ ପରେ ସେ ସ୍କୁଲଟିକୁ ଶିକ୍ଷକ ଓ ଆସବାବ ସହିତ ସତ୍ୟବାଦୀକୁ ଉଠାଇ ନେଇ ତାଙ୍କର ଆଦର୍ଶ ବନ ବିଦ୍ୟାଳୟ ଆରମ୍ଭ କରିଥିଲେ ।

ହରିହର ଅଯୋଧ୍ୟା ନିକଟରେ ବଳରାମପୁର ରାଜାଙ୍କଠାରୁ ପାଇଥିବା ଲେବାକ ପାଞ୍ଚହଜାର ଟଙ୍କାରେ ପୁରୀରେ ସଂସ୍କୃତ ବିଦ୍ୟାଳୟ ବସାଇଥିଲେ । ସେ ସ୍କୁଲରେ କେବଳ ଦର୍ଶନ ଓ ସଂସ୍କୃତ ନୁହେଁ, ଇଂରେଜୀ, ଗ୍ରୀକ୍, ଲାଟିନ ଓ ତହିଁ ସଙ୍ଗେ ଇତିହାସ, ଗଣିତ, ଜ୍ୟୋତିଷ ପ୍ରଭୃତି ଶିକ୍ଷା ଦିଆଯିବାର ହରିହର କଳ୍ପନା କରିଥିଲେ । ପିଲାମାନଙ୍କୁ ରାତିରେ ହରିହର ନିଜେ ଇଂରେଜୀ ପଢ଼ାଉଥିଲେ । ସ୍କୁଲଟି ପ୍ରଥମେ ବସୁଥିଲା ସରକାରୀ ସ୍କୁଲର ବାରଣ୍ଡାରେ । ହରିହରଙ୍କ

Digitized by PPRACHIN, SOA

ପ୍ରଭୃତି ଈର୍ଷାପରାୟଣ ଲୋକମାନେ ତାଙ୍କ ସ୍କୁଲକୁ ସେଠାରୁ ଉଠାଇ ଦେବାକୁ ଚେଷ୍ଟା କରିଥିଲେ । କିନ୍ତୁ ପୁରୀ କଲେକ୍ଟର, ହରିହରଙ୍କ ଗୁଣମୁଗ୍ଧ ବକ୍‌ସ-ଓ୍ୱେଲ୍‌ଙ୍କ ହସ୍ତକ୍ଷେପ ଫଳରେ ତାହା ଉଠାଇବା ପ୍ରସ୍ତାବ ବନ୍ଦ ହେଲା । କଲେକ୍ଟର ସରକାରୀ ସ୍କୁଲ ବାରଣ୍ଡାରେ ହରିହରଙ୍କ ସ୍କୁଲ ଚଳାଇବାକୁ ଆଦେଶ ଦେବା ସଙ୍ଗେ ସଙ୍ଗେ ହରିହରଙ୍କ ବିଦ୍ୟାଳୟର ସ୍ୱତନ୍ତ୍ର ଘର ତିଆରି ପାଇଁ ଏକ ପାଣ୍ଠି ଆରମ୍ଭ କରିଥିଲେ ଏବଂ ସେଥିପାଇଁ ନିଜେ ପଚିଶ ଟଙ୍କା ଦେବାରେ, ଏସ. ପି., ଜଇଣ୍ଟ ମାଜିଷ୍ଟ୍ରେଟ ଓ ମହାନ୍ତ ହୟଗ୍ରୀବ ଦାସ ପ୍ରଭୃତି ମଧ୍ୟ ଚାନ୍ଦା ଦେଇଥିଲେ ।

ବକ୍‌ସଓ୍ୱେଲଙ୍କ ସଙ୍ଗେ ହରିହର ୟୁରୋପ ଯାଇ ବେଦାନ୍ତ ଭାଷଣ ଦେବା ପାଇଁ ସ୍ଥିର ହୋଇଥିଲା । ସେଥିପାଇଁ କଲିକତାରେ ଗରମ ସୁଟ୍ ସିଲାଇ ଓ ଜୋତା ପ୍ରଭୃତି କିଣା ସରିଥିଲା; କିନ୍ତୁ ତାଙ୍କ ପ୍ରସ୍ତାବିତ ପୁରୀ ବିଶ୍ୱ ବିଦ୍ୟାଳୟ ପାଇଁ ଅର୍ଥ ସଂଗ୍ରହକୁ ଅଗ୍ରାଧିକାର ଦେଇ ସେ ୧୮୭୨ ମସିହାରୁ ପ୍ରାୟ ବର୍ଷେ କାଳ ଭାରତର ବିଭିନ୍ନ ସ୍ଥାନରେ ରାଜାମାନଙ୍କୁ ଭେଟି ଅର୍ଥ ସଂଗ୍ରହ କରିବା ପାଇଁ ବାହାରି ପଡ଼ି-ଥିଲେ । ବହୁ ଦିନ ତାଙ୍କର କୌଣସି ଖବର ମିଳୁନଥିଲା, କାରଣ ସେତେବେଳେ ବିଭିନ୍ନ ସ୍ଥାନକୁ ରାସ୍ତାଘାଟ କିଛି ନ ଥିଲା । ପୁରୀରୁ କଲିକତାକୁ ମଧ୍ୟ ଚାଲି ଚାଲି ଯିବାକୁ ହେଉଥିଲା । ସେତେବେଳେ କେବଳ ସେ ପଠାଇଥିବା ୭୦୦ ଟଙ୍କାର ଖବର ତାଙ୍କ ବିଦ୍ୟାଳୟରେ ଆସି ପହଞ୍ଚିଥିଲା ।

ସ୍ୱାମୀ ଦୟାନନ୍ଦ ସରସ୍ୱତୀଙ୍କ ଆମନ୍ତ୍ରଣରେ ତାଙ୍କ ସାହାଯ୍ୟରେ ପଶ୍ଚିମ ଭାରତ ରାଜପୁତାନା ପ୍ରଭୃତିରୁ ଅର୍ଥ ସଂଗ୍ରହ ପାଇଁ ଅଜମୀର ଯିବା ପାଇଁ କଲିକତାରେ ପହଞ୍ଚିବା ସମୟରେ ହରିହର ଏକ ଷଡ଼ଯନ୍ତ୍ର ମୂଳକ ଦୁର୍ଘଟଣାର ସମ୍ମୁଖୀନ ହୋଇଥିଲେ । ୧୮୭୩ ଡ଼ିସେମ୍ବର ମାସରେ ହଠାତ୍ ବାକ୍‌ଶକ୍ତି ଓ ମସ୍ତିଷ୍କର ଭାରସାମ୍ୟ ହରାଇ ସେ କଲିକତାରୁ କଟକ ଅଣା ହୋଇଥିଲେ । କବିରାଜ ଫକୀର ତ୍ରିପାଠୀ ତାଙ୍କ ଚିକିତ୍ସା ପାଇଁ ବୃହତ୍ ଛାଗଳାଦ୍ୟ ଘୃତର ବ୍ୟବସ୍ଥା ଦେଇଥିବାରୁ କଟକରେ ଦେଶପ୍ରେମୀ ପ୍ୟାରୀମୋହନ ଓ ଗୌରୀ ଶଙ୍କର ସେ ଔଷଧ ତିଆରି ପାଇଁ ଚାନ୍ଦା ସଂଗ୍ରହ କରୁଥିଲେ । ସେହି ସମୟରେ ହରିହରଙ୍କୁ ପୁରୀ ନେଇ ଏକାକୀ ତାଙ୍କ ଘରେ ରଖାଯାଇଥିଲା । ତାଙ୍କ ସ୍ତ୍ରୀ ଓ ମାଆଙ୍କୁ ସେ କେବେ ଗ୍ରାମରୁ ପୁରୀକୁ ଆଣି ନ ଥିଲେ । ପୂର୍ବରୁ ହରିହରଙ୍କ ୟୁରୋପ ଯିବା

Digitized by PPRACHIN, SOA

ସମ୍ବନ୍ଧରେ ପୁରୀରେ ନାନା ବାଦ ବିସମ୍ବାଦ ଗ୍ଭଲିଥିଲା । ସମୁଦ୍ର ପାର ହୋଇ ଦେଶାନ୍ତରକୁ ଗଲେ ସେତେବେଳେ ଧର୍ମହାନି ହେଉଥିଲା । ମଧୁସୂଦନ ରାଓଙ୍କ ପରି ଶିକ୍ଷିତ ଲୋକ ହରିହରଙ୍କୁ ଜ୍ଞାନଦାତା ବୋଲି କହୁଥିଲେ ମଧ୍ୟ ସେ ଖବର ତାଙ୍କ ମନକୁ ଆନ୍ଦୋଳିତ କରିଥିଲା । ସେ ବ୍ରାହ୍ମଧର୍ମ ଦ୍ୱାରା ପ୍ରଭାବିତ ହେବା ସତ୍ତ୍ୱେ ତାଙ୍କର ସମସ୍ତ ସଂସ୍କାର ରକ୍ଷଣଶୀଳ ହିନ୍ଦୁ ପରିବାରର ଥିଲା । ମଧୁସୂଦନଙ୍କ ଶ୍ୱଶୁର ବଳରାମଙ୍କ ହରିହର ଦାସଙ୍କୁ ନାସ୍ତିକ ବୋଲି ସମାଲୋଚନା କରୁଥିଲେ । ତତ୍କାଳୀନ ବ୍ରାହ୍ମମାନଙ୍କ ମତାନ୍ଧ ଥିବାରୁ ଓ ହରିହର ସଂସ୍କାରକ ହେଲେ ମଧ୍ୟ ତାଙ୍କୁ ବ୍ରାହ୍ମ ଧର୍ମରେ ଦୀକ୍ଷିତ କରି ପାରି ନ ଥିବାରୁ କଲିକତା ଓ ଓଡ଼ିଶାର ବ୍ରାହ୍ମମାନେ ହରିହରଙ୍କର ପରମ ବିରୋଧୀ ହୋଇ ଉଠିଥିଲେ ।

ପୁରୀରେ ଲୋକମାନେ ମଧ୍ୟ କ୍ରୁଦ୍ଧାକ୍ରାନ୍ତ ହେଉଥିଲେ ଯେ, ହରିହରଙ୍କୁ ନାସ୍ତିକ ବୋଲି ଚିହ୍ନିତ କରି ପୁରୀ ପଣ୍ଡିତମାନେ ମନ୍ତ୍ରକରି ତାଙ୍କୁ ଯେପରି ଅପ୍ରୀତିରେ ପକାଇଥିଲେ । ମଧୁସୂଦନ ରାଓ ଏ ସବୁ ଚିନ୍ତା ଭିତରେ ବୋଧହୁଏ କୌଣସି ପରୋକ୍ଷ ଆଭାଷ ପାଇ ହରିହରଙ୍କ ମୃତ୍ୟୁ ଆଗରୁ ସେ ଅଗ୍ନିଦଗ୍ଧ ହୋଇ ପ୍ରାଣତ୍ୟାଗ କରିବା କଥା ସ୍ୱପ୍ନରେ ଦେଖିଥିବାର ତାଙ୍କର ଡାଏରୀରେ ଲେଖିଥିଲେ ଓ ପରେ ହରିହରଙ୍କ ମୃତ୍ୟୁଖବର ବାଲେଶ୍ୱରରେ ଧାଇଁ ତାଙ୍କ ମନ ଅଜଣା ଭୟ ଓ ଆଶଙ୍କାରେ ଭରିପାଇଥିବା କଥା ଗବେଷକ ଜଗନ୍ନାଥ ଦାସ ଲେଖିଛନ୍ତି ।

ମୃତ୍ୟୁ ପୂର୍ବରୁ ହରିହର ସ୍ନାନ୍ତ ଚିନ୍ତା ଭରେ ଉନ୍ମାଦ ହୋଇ ବୁଲୁଥିବା ବେଳେ ପେଣ୍ଟିଙ୍ଗଲେ ଅଗ୍ନି ଲାଗି ସେ ପୋଡ଼ିଗଲେ ଓ ତାଙ୍କ ପାଟି ଚିଟି ଚିତ୍କାର କଲେ ମଧ୍ୟ ଘର ବାହାରୁ ଶିକୁଳି ପଡିଥିବାରୁ ଆଉ ବାହାରକୁ ବାହାରି ପାରି ନଥିଲେ ବୋଲି ସମ୍ବାଦ ପ୍ରଚରିତ ହୋଇଥିଲା ।

ତାଙ୍କର ମୃତ ହେବା ଓ ପୋଡ଼ିଯିବା ତାଙ୍କ ଶତ୍ରୁମାନଙ୍କର ବୋଧହୁଏ ଏକ ସୁଚିନ୍ତିତ ଯୋଜନା ଥିଲା । ସେ କାଳରେ ଓଡ଼ିଆଙ୍କ ଶତ୍ରୁ ଆତତାୟୀ ମାନେ କଲିକତାରେ ବିଷ ପ୍ରୟୋଗ କରି ବା ଅନ୍ୟ କେଉଁ ଉପାୟରେ ବାଗ୍ମୀ ହରିହରଙ୍କୁ ମୂକ ଓ ବାତୁଳ କରିଥିଲେ ଓ ପୁରୀରେ ହୁଏତ ସେ ଶୋଇବା ଅବସ୍ଥାରେ ତାଙ୍କ ଶରୀରର ବିଭିନ୍ନ ସ୍ଥାନରେ ଅଗ୍ନି ସଂଯୋଗ କରି ବାହାରୁ ଶିକୁଳି ଦେଇ ଚାଲି ଯାଇଥିଲେ । ସେସବୁ ବିଷୟ ମୁଣ୍ଡ ଖେଳାଇବା ପାଇଁ ସେତେବେଳେ

Digitized by PPRACHIN, SOA

କାହାର ସାହସ ବା ସମ୍ବଳ ନଥିଲା । ଖବରକାଗଜରେ ପ୍ରକାଶିତ ରିପୋର୍ଟରୁ ତାଙ୍କର ଦୁଇ ହାତ, ଦୁଇ ପାଦ ଓ ପିଠିରେ ଘା ହୋଇଥିବାର ଲେଖାଥିଲା । ତେଣୁ ଗୋଟିଏ ଗୋଡ଼ରେ ଚକ୍ଷୁ ନଥାଇଁ ଲାଗିଲେ ସେଠାରୁ ଫେରିବା ଆଉ ସମ୍ଭବ ନୁହେଁ ।

ତାଙ୍କର ମୃତ୍ୟୁଶଯ୍ୟାରେ ଗୃହବନ୍ଦୀ କାଳ ପଡ଼ିରହି ସେ ସାମାନ୍ୟ କଥାବାର୍ତ୍ତା କରି ପାରିବା ଓ ଲୋକ ଚିହ୍ନିପାରିବା କଥା ପରେ ଆସିଥିବା ତାଙ୍କ ଆତ୍ମୀୟଙ୍କ ଠାରୁ ଜଣା ପଡ଼ିଥିଲା । ସେତେବେଳେ ହରିହରଙ୍କ ଅନୁରୋଧରେ ତାଙ୍କ ବନ୍ଧୁସବୁ ଆଣି ତାଙ୍କ ଗୃହ ପାଖରେ ରଖାଯାଇଥିଲା । ତାଙ୍କ ଆଖି ଆଗରେ କାଗଜ କ ବନ୍ଧ ଖୋଲି ଧରିଲେ ତାଙ୍କ ମୁହଁ ଆନନ୍ଦରେ ଉଜ୍ଜ୍ୱଳ ହୋଇ ଯାଉଥିଲା ।·ସେ-ସବୁ କାଗଜ ଭିତରେ ଷାମସ ସାହେବଙ୍କର ଗୋଟିଏ ସଂସ୍କୃତ ଚିଠି ଓ ଷାମସଙ୍କ ମାଆଙ୍କର ଫଟୋ ଖଣ୍ଡିଏ ମଧ୍ୟ ରହିଥିଲା ।

ମୃତ୍ୟୁର ଅଳ୍ପ ସମୟ ପୂର୍ବରୁ ହରିହର ତାଙ୍କ ଆତ୍ମୀୟ ଜ୍ୟୋତିଷ ବଳଭଦ୍ରଙ୍କ ଆଗରେ ଶ୍ଳୋକଟିଏ ବୋଲିଥିଲେ । ସେ ପିଲାଦିନୁ ବିବାହ କରି ତାଙ୍କ ଗ୍ରାମରେ ତାଙ୍କ ସ୍ତ୍ରୀ ରହୁଥିଲେ ମଧ୍ୟ ତାଙ୍କର କାର୍ଯ୍ୟସିଦ୍ଧି ପାଇଁ ସେ ମୂଳରୁ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରି ପୁରୀରେ ରହୁଥିଲେ । ତାଙ୍କ ସ୍ତ୍ରୀଙ୍କୁ ପୁରୀ ନ ଆଣି ଗ୍ରାମରେ ନିଜ ମାଆ ପାଖରେ ରଖାଇଥିଲେ । ତେଣୁ ସେ ସେହି ଶ୍ଳୋକରେ କହିଥିଲେ । ଦେଶ କାର୍ଯ୍ୟରେ ବ୍ୟସ୍ତ ଥାଇ ସେ ସ୍ତ୍ରୀ ସହବାସ କରି ଜୀବନକୁ ଉପଭୋଗ କରିବାର ସ୍ୱପ୍ନ ମଧ୍ୟ ଦେଖି ନାହାନ୍ତି କିମ୍ବା ବିଧି ଅନୁସାରେ ସ୍ୱର୍ଗ ପ୍ରାପ୍ତି ପାଇଁ ଈଶ୍ୱରଙ୍କ ଧ୍ୟାନ କିମ୍ବା ଧର୍ମ ଅର୍ଜନ କରିପାରିନାହାନ୍ତି । ତାଙ୍କର ଶେଷୋକ୍ତି ଯେପରି ଥିଲା ତାଙ୍କ ଜୀବନର କଳ୍ପନା ଓ କର୍ମ ସ୍ଫୁରଣର ଶେଷ କଥା ।

ହରିହରଙ୍କ ତିରୋଧାନ ପରେ ପରେ ରକ୍ଷଣଶୀଳମାନେ ତାଙ୍କ ଅନୁ-ଷ୍ଠାନକୁ ହାତ କରି ନେଇଥିଲେ । ସେ ସ୍କୁଲ ଏବେ କଲେଜ ହୋଇଛି, ତାହା ସଙ୍ଗେ ତାଙ୍କ କଳ୍ପିତ ସଂସ୍କୃତ ବିଶ୍ୱବିଦ୍ୟାଳୟ ମଧ୍ୟ ପୁରୀରେ ପ୍ରତିଷ୍ଠିତ ହୋଇଛି ; କିନ୍ତୁ ସେ ସବୁରେ ତାଙ୍କ ନାମର ଗନ୍ଧ ପର୍ଯ୍ୟନ୍ତ ନାହିଁ ।

ତାଙ୍କ ପରେ ଜନ୍ମ ହେଇଥିବା, ତାଙ୍କ ଆଦର୍ଶରେ ପୁଷ୍ଟ ସତ୍ୟବାଦୀ ଗୁରୁକୁଳର ଅଧ୍ୟକ୍ଷ, ଜଗନ୍ନାଥ ସଂସ୍କୃତିର ପରମ ପୃଷ୍ଠପୋଷକ, ସଂସ୍କାରକ ନୀଳକଣ୍ଠଙ୍କୁ

Digitized by PPRACHIN, SOA

ରକ୍ଷଣଶୀଳ ପଣ୍ଡିତମାନେ ମଧ୍ୟ ନାସ୍ତିକ ଆଖ୍ୟା ଦେଇଥିଲେ । ତାଙ୍କ ବିଦ୍ୟାଳୟରେ ଅଗ୍ନି ସଂଯୋଗ କରି ତାଙ୍କର ପଣ୍ଡିତ ହରିହରଙ୍କ ନାମରେ ନାମିତ ବିରାଟ ଗ୍ରନ୍ଥାଗାରକୁ ଭସ୍ମୀଭୂତ କରିଥିଲେ ; କିନ୍ତୁ ସେ ପଞ୍ଚଶକ୍ତିଙ୍କୁ ଧ୍ୱଂସକରିପାରି ନଥିଲେ । ଅନ୍ଧକାର ଯୁଗରେ ପଣ୍ଡିତ ହରିହର ଏକାକୀ ଗ୍ଢକଥିଲେ । କଲିକତାରୁ ପୁରୀ ପର୍ଯ୍ୟନ୍ତ ଆତତାୟୀ ମାନଙ୍କର ଶିକାର ହୋଇ ସେହି ଦେଶପ୍ରେମୀ, ଆଦ୍ଧ-ଜ୍ୟୋତି ଓଡ଼ିଆ ଜାତିର ପ୍ରାଣ ପ୍ରତିଷ୍ଠାତା ପଣ୍ଡିତ ହରିହର ଏ ଜାତିର ଉନ୍ନତି କରିବାପାଇଁ ବାହାରି ସହିଦ୍ ହୋଇଥିଲେ ଏଥିରେ ସନ୍ଦେହ କରିବାର କାରଣ ନାହିଁ ।

ଏହି ଗବେଷଣାମୂଳକ କ୍ଷୁଦ୍ର ପୁସ୍ତିକା ସଂକଳନରେ ଆୟୁକର କମିଶନର ସଂଗ୍ରାହକ ଅଧ୍ୟାପକ ଗୋପାଳ ଚନ୍ଦ୍ର ନନ୍ଦ, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର ପ୍ରକାଶିମାର ଅଧ୍ୟାପକ କୃଷ୍ଣ ପ୍ରସାଦ ମିଶ୍ର ଓ ଅନ୍ୟ ବନ୍ଧୁମାନଙ୍କର ଅକୁଣ୍ଠିତ ସାହାଯ୍ୟ ପାଇଁ ମୁଁ ସେମାନଙ୍କଠାରେ ଚିର କୃତଜ୍ଞ ।

ଏ କ୍ଷୁଦ୍ର ପୁସ୍ତିକାଟି ପାଠକମାନଙ୍କ ଦ୍ୱାରା ଆଦୃତ ହୋଇ ଓଡ଼ିଆ ଜାତିର ଅଗ୍ରଗାମୀ ପୁରୁଷ, ଆଦ୍ଧଜ୍ୟୋତି ହରିହର ସମ୍ବନ୍ଧରେ ସେମାନଙ୍କର ସମ୍ୟକ ଧାରଣା ଦେଇ ପାରିଲେ ଲେଖକର ଶ୍ରମ ସାର୍ଥକ ହେବ ।

ଲେଖକ

**ବିକ୍ରମ ଦାସ**

Digitized by PPRACHIN, SOA

# ସୂଚୀ



Digitized by PPRACHIN, SOA

Digitized by PPRACHIN, SOA

Digitized by PPRACHIN, SOA



Digitized by PPRACHIN, SOA

# ଆନ୍ଦୋଳନର ହରିହର

## ୧ । ତତ୍‌କାଳୀନ ଅବସ୍ଥା :

ଊନବିଂଶ ଶତାବ୍ଦୀଟି ଓଡ଼ିଆ ଜାତି ପାଇଁ ଥିଲା ଏକ ମହା ସଙ୍କଟ-ପୂର୍ଣ୍ଣ ସମୟ । ୧୮୦୩ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ଉପକୂଳ ଅଞ୍ଚଳ କଟକ, ପୁରୀ, ବାଲେଶ୍ୱର ଇଂରେଜ କୋମ୍ପାନୀ ହାତକୁ ଗଲା ।

ଶତ ଶତ ବର୍ଷର ଧର୍ମାନ୍ଧ ଲୁଣ୍ଠନ ଓ ବର୍ଗୀ, ପ୍ରଭୃତିଙ୍କ ଅତ୍ୟାଚାର ପରେ ଦୁର୍ଗତ ଓଡ଼ିଶାର ଦୁର୍ଭାଗ୍ୟର ଭଙ୍ଗା ପଡ଼ିବ ବୋଲି ଲୋକେ ଆଶା କରିଥିଲେ । ପୂର୍ବରୁ ପର ପଦାନତ ହୋଇ ଥିଲେ ମଧ୍ୟ ଲୋକଙ୍କର ଅବସ୍ଥା ସ୍ୱଚ୍ଛଳ ଥିଲା । ଲୋକଙ୍କ ଉପରେ ପ୍ରତ୍ୟକ୍ଷ ଶାସନ ନଥିଲା । ଗ୍ରାମପଞ୍ଚାୟତ ଦ୍ୱାରା ଲୋକେ ନିଜ କଥା ବୁଝୁଥିଲେ । ଜମିଜମା ଉପରେ ଶାସକଙ୍କର ଲୋଲୁପ ଦୃଷ୍ଟି ନଥିଲା । ଇଂରେଜ ଶାସନରେ ଲୋକଙ୍କ ଆଶା ସମ୍ପୂର୍ଣ୍ଣ ରୂପେ ଚୂର୍ଣ୍ଣିଭୂତ ହେଲା । ପୂର୍ବରୁ ସାମୟିକ ଲୁଣ୍ଠନ ବା ଶୋଷଣ ସମ୍ପୂର୍ଣ୍ଣ ଶୋଷଣରେ ପରିଣତ ହୋଇ ଓଡ଼ିଆଙ୍କ ଅସ୍ତିତ୍ୱ ବିଲୋପ ହେବାକୁ ବସିଲା ।

ପଡ଼ୋଶୀ ବଙ୍ଗ ରାଜ୍ୟ, ପ୍ରଭୃତି ପ୍ରାୟ ଶହେ ବର୍ଷ ଆଗରୁ ଇଂରେଜ କୋମ୍ପାନୀ ହାତକୁ ଯାଇଥିଲେ । ସେସବୁ ରାଜ୍ୟରେ ଆଧୁନିକତାର ପ୍ରଭାବ ଫଳରେ ବହୁ ଲୋକ ନବ୍ୟଶିକ୍ଷାରେ ଶିକ୍ଷିତ ହୋଇସାରିଥିଲେ । ସେମାନଙ୍କ ଭିତରୁ ଅନେକେ ଇଂରେଜଙ୍କ ବାହୁଛାୟା ତଳେ ରହି ଦୁର୍ଦ୍ଧର୍ଷ ଶାସକରେ ପରିଣତ ହୋଇଥିଲେ ।

ସେହି କ୍ଷୁଦ୍ର ଓଡ଼ିଶା ଖଣ୍ଡ ଇଂରେଜଙ୍କ ହାତକୁ ଗଲା ପରେ ତାହା ସେହି ଦେଶୀୟ କର୍ମଚାରୀମାନଙ୍କର ଚର ଭୂଇଁରେ ପରିଣତ ହୋଇଗଲା । ସ୍ୱତାବତ ସେମାନେ କଲିକତାରେ ଅଳ୍ପ ମୂଲ୍ୟରେ ଜମି ସବୁ ନିଲାମ ଧରି ଓଡ଼ିଶାର

Digitized by PPRACHIN, SOA

ଜମିଦାର ପାଲଟି ଗଲେ । ସେହିମାନେ ହେଲେ ଓଡ଼ିଶାର ହାକିମ, ବଗୁରପତ୍ତି, ଓକିଲ୍, ପୋଲିସ୍, ଡାକ୍ତର, ଇଞ୍ଜିନିଅର,' ସବୁ । ଓଡ଼ିଶାର ଜନଜୀବନର ସବୁ କ୍ଷେତ୍ରରେ ସେମାନେ ହାକିମି ଜାହିର କରି ଓଡ଼ିଶାର ଭାଷା ଓ ସଂସ୍କୃତିକୁ ମଧ୍ୟ ଲୋପ କରିବାକୁ ଉଦ୍ୟମ କରୁଥିଲେ । ଅନ୍ୟ କଥାରେ ଶାସକ ପଦରେ ରହି ସେମାନେ ଲଜ୍ଜ୍ୟାହୀନ ଶୋଷକରେ ପରିଣତ ହୋଇଥିଲେ ।

## ୨ । ଶିକ୍ଷାର ଅଧୋଗତି :

ଚାଷବାସ ପାଇଁ ଲୋକେ ସମ୍ପୂର୍ଣ୍ଣ ରୂପେ ବର୍ଷା ବା ପାଳକ ଉପରେ ନିର୍ଭର କରୁଥିଲେ । ଜଳସେଚନର ବା ଚାଷବାସ ପାଇଁ ଆର୍ଥିକ ସାହାଯ୍ୟ ମିଳିବାର କୌଣସି ସୁବିଧା ନଥିଲା । ବ୍ୟବସାୟ ବାଣିଜ୍ୟ ସବୁ ଓଡ଼ିଆଙ୍କ ହାତରୁ ଚାଲି ଯାଇଥିଲା । ନୌବାଣିଜ୍ୟ ସବୁ ବନ୍ଦ ହୋଇଯାଇଥିଲା । ବର୍ଷ ପରେ ବର୍ଷ ଅପାଳକ ପଡ଼ି ଦେଶରେ ବରାବର ଉତ୍କଟ ଖାଦ୍ୟାଭାବ ଲାଗି ରହିଥିଲା । ଅନ୍ନଚିନ୍ତା ଭୟଙ୍କର ଥିବାବେଳେ, ଶିକ୍ଷା ପାଇଁ ଆନ୍ଦୋଳନ କରିବା ପାଇଁ କାହାର ଶକ୍ତି ଥିଲା !

ଆଉରଙ୍ଗଜେବଙ୍କ ଅମଳରୁ ଦେଶୀୟ ବିଦ୍ୟା ଓ ସଂସ୍କୃତ ବିଦ୍ୟାଳୟ ସବୁ ଶାସକମାନଙ୍କ ବିଷଦୃଷ୍ଟି ଯୋଗୁ ପ୍ରାୟ ବନ୍ଦ ହୋଇ ଯାଇଥିଲା । ଗ୍ରାମ୍ୟ ଚାଟଶାଳୀ ଛଡ଼ା ବିଦ୍ୟାଧ୍ୟୟନ ପାଇଁ ଅନ୍ୟ କୌଣସି ଉପାୟ ନଥିଲା ।

## ୩ । ଲୋକଙ୍କ ଦୁରାବସ୍ଥା :

ଦେଶରେ ଲୋକେ କିଂକର୍ତ୍ତବ୍ୟବିମୂଢ଼ ହୋଇ ପଡ଼ି ରହିଥିଲେ । ହୀନ-ମନ୍ୟତା, ଡରଭୟ, କୁସଂସ୍କାର ଓଡ଼ିଆ ସମାଜକୁ ସମ୍ପୂର୍ଣ୍ଣ ରୂପେ ଆକ୍ରାନ୍ତ କରି ସାରିଥିଲା । ଦେଶୀୟ ଶାସକମାନେ ଲୋକଙ୍କୁ ଇଂରେଜ ଶାସକମାନଙ୍କ ପାଖ ମଡ଼ାଇ ଦେଉନଥିଲେ । ଓଡ଼ିଆମାନଙ୍କ ଭିତରେ ଇଂରେଜ ଶାସକ-ମାନଙ୍କ ପ୍ରତି ସେମାନେ ଭୟ ସଞ୍ଚାର କରାଇ ରଖିଥିଲେ । ରକ୍ଷଣଶୀଳ ଲୋକେ ଇଂରେଜଙ୍କୁ ଗୋରୁ ମାଉଁସଖିଆ ଅପବିତ୍ର ଯବନ ଆଖ୍ୟା ଦେଇ ସେମାନଙ୍କୁ ଅନ୍ତର ସହିତ ଘୃଣା କରୁଥିଲେ । ଇଂରେଜମାନଙ୍କ ହାତ ଏ ଦେଶକୁ ଆନୀତ କାଗଜ କଲମ, ପ୍ରଭୃତିକୁ ମଧ୍ୟ ଛୁଇଁଦେଲେ ଜାତି ଚାଲିଯିବ ବୋଲି ସେମାନେ ସେ ସବୁର ମଧ୍ୟ ପାଖ ମାଡ଼ୁନଥିଲେ ।

Digitized by PPRACHIN, SOA

ଏହି ସବୁ କାରଣରୁ ଲୋକେ ଇଂରେଜ ଶାସକଙ୍କ ନିକଟକୁ ଯାଇ ନ ଥିଲେ କିମ୍ବା କୌଣସିବାଟେ ସେମାନଙ୍କ ଅଭାବ ଅସୁବିଧାର ଅଭିଯୋଗ ଇଂରେଜ ଶାସକଙ୍କ କାନରେ ପକାଇ ପାରୁନଥିଲେ । ତା ଦ୍ୱାରା ଦେଶୀୟ (ଫଡ଼ୋଶୀ) ଶାସକମାନଙ୍କୁ ଲୋକଙ୍କ ଉପରେ ପୂର୍ବ ଢଙ୍ଗରେ ଅତ୍ୟାଚାର ଚଳାଇବା ବେଶୀ ସୁଗମ ହେଉଥିଲା ।

## ୪ । ପଣ୍ଡିତ ହରିହରଙ୍କ ଆବିର୍ଭାବ :

ରାଜ୍ୟର ଏହିସବୁ ଅତୀବ ଦୁଃସ୍ଥ ପରିସ୍ଥିତିବେଳେ ଯୁଗଜ୍ୟୋତି ହରିହର ଆବିର୍ଭାବ ହୋଇଥିଲେ । ୧୮୦୨ ମସିହା କୁମାର ପୂର୍ଣ୍ଣିମୀ ଦିନ ଭୋଇ ବଂଶ ପ୍ରଥମ ଗଜପତି ରାମଚନ୍ଦ୍ର ଦେବଙ୍କ ପ୍ରତିଷ୍ଠିତ ଶ୍ରୀ ରାମଚନ୍ଦ୍ରପୁର ଶାସନରେ ହରିହର ଭୂମିଷ୍ଠ ହୋଇଥିଲେ । କୌଶିକ ଗୋତ୍ରଜ ଶ୍ରୀ ଜଗନ୍ନାଥ ଦାସ ତାଙ୍କର ପିତା ଥିଲେ; କିନ୍ତୁ ହରିହର ବାଲ୍ୟକାଳରୁ ତାଙ୍କ ପିତାଙ୍କୁ ହରାଇ ଥିଲେ । ଅଭିଭାବକ ଓ ସମ୍ବଳର ଅଭାବରୁ ସେ ବିଦ୍ୟାଧ୍ୟୟନ କରି ନପାରି ପ୍ରାୟ ଚଉଦ ବର୍ଷ ବୟସ ପର୍ଯ୍ୟନ୍ତ ମୂର୍ଖ ହୋଇ ବୁଲୁଥିଲେ ।

## ୫ । ଜୀବନରେ ପରିବର୍ତ୍ତନ :

ଗୋଟିଏ ଗୋଟିଏ ସାମାନ୍ୟ ଘଟଣା ସମୟ ସମୟରେ ମନ ମଧ୍ୟରେ ଯୁଗାନ୍ତକାରୀ ପରିବର୍ତ୍ତନ ଆଣି ଦେଇଥାଏ । ସେହିପରି ଏକ ଘଟଣା ଘଟିବା ଦ୍ୱାରା ମୂର୍ଖ ହରିହରଙ୍କର ଜ୍ଞାନ ଚକ୍ଷୁ ଖୋଲିବାକୁ ଆରମ୍ଭ କରିଥିଲା ।

ହରିହରଙ୍କ ଗ୍ରାମଠାରୁ ପୁରୀ ମାତ୍ର ୧୨ ମାଇଲ ଦୂର । ସେତେବେଳେ ଲୋକେ ଚାଲି କରି ପୁରୀ ଯିବା ଆସିବା କରୁଥିଲେ । ରେଲଗାଡ଼ି, ବସ୍ ବା ରିକ୍ସା ପ୍ରଭୃତି, ଯାନ ବାହାନ ପାଇଁ ରାସ୍ତା ନଥିବାରୁ ସେଗୁଡ଼ିକ ସ୍ୱପ୍ନ ଥିଲା । ଥରେ ହରିହର ଚାଲି ଚାଲି ପୁରୀ ଯାଇଥିଲେ । ଅନ୍ୟମନସ୍କ ଓ ଉଦ୍ଦେଶ୍ୟହୀନ ଭାବରେ ବୁଲୁ ବୁଲୁ ଗୋଟିଏ ସ୍ଥାନରେ ବିଦ୍ୟାଚର୍ଚ୍ଚା ହେଉଥିବାର ଦେଖିବାକୁ ପାଇଲେ । ଜଣେ ପଣ୍ଡିତ ସେଠାରେ ସଂସ୍କୃତରେ ଭାଷଣ ଦେଉଥିଲେ । ହରିହର ସେଠାରେ ଠିଆ ହୋଇଯାଇ ସେ ଭାଷଣକୁ ତନ୍ମୟ ହୋଇ ଶୁଣୁଥିଲେ । ତାହା ସେ ବୁଝିଲେ ବା ନ ବୁଝିଲେ ପଣ୍ଡିତଙ୍କ ଭାଷା ଓ ଭାବଭଙ୍ଗୀ ତାଙ୍କୁ ଆକୃଷ୍ଟ କରିଥିଲା ।

ତାଙ୍କୁ ଜାଣିଥିବା ଜଣେ ପଣ୍ଡିତମନ୍ୟ ବ୍ୟକ୍ତି ସେଠାରେ ଉପସ୍ଥିତ ଥିଲେ । ସେ ହରିହରଙ୍କୁ ସେପରି ତନ୍ମୟ ଥିବାର ଦେଖି ତାଚ୍ଛଲ୍ୟ କରି କହିଲେ—

Digitized by PPRACHIN, SOA

"ତୁ ମୂର୍ଖଟା ଆଁଟେ କରି ଏଥିରୁ କଅଣ ଗୁଡ଼ାଏ ପିଇଯାଉଛୁ ? ତୁ ଏଥିରୁ କଅଣ ବୁଝିବୁ ? ଯାଆ, ଯାଆ, ଏଠି ଗହଳି ନ କରି ବେଗେ ଏଠୁ ପଳା ।"

## ୬ । ଶିକ୍ଷାବ୍ରତୀ ହରିହର

ପଣ୍ଡିତମନ୍ୟଙ୍କ ସେ ମନ୍ତବ୍ୟ ହରିହରଙ୍କୁ ବଡ଼ ବାଧିଲା । ତାଙ୍କ ମନରେ ଏକ ବଡ଼ ପରିବର୍ତ୍ତନ ଆସିଲା । ସେ ପାଠପଢ଼ି ନିଶ୍ଚୟ ଜଣେ ବଡ଼ ପଣ୍ଡିତ ହେବେ ବୋଲି ସେଠାରେ ସଂକଳ୍ପ କଲେ ।

ସେ ନିଜ ଗ୍ରାମକୁ ଲେଉଟିଲେ । ତାଙ୍କର ମନ ଆଉ କେଉଁଥିରେ ଲାଗିଲା ନାହିଁ । ଗ୍ରାମର ନିକଟରେ କୌଣସି ଭଲ ଶିକ୍ଷାନୁଷ୍ଠାନ ବା ଗୁରୁକୁଳ ନଥିଲା । ଦୂରରେ ହେଉ ପଛକେ ସେ କୌଣସି ଗୁରୁକୁଳର ସନ୍ଧାନ ପାଇଲେ, ସେଠାକୁ ଯାଇ ଗୁରୁଙ୍କ ନିକଟରେ ରହି ବିଦ୍ୟାଶିକ୍ଷା କରିବେ ବୋଲି ମନେ ମନେ ବିଚାରୁଥିଲେ । ତାଙ୍କ ଗ୍ରାମର ଜଣେ ଲୋକ ସେପରି ଜଣେ ଗୁରୁଙ୍କ ବିଷୟ ଅବଗତ ଥିଲେ ।

ସେ କାଳରେ କରଦ ରାଜ୍ୟ ଢେଙ୍କାନାଳରେ ଜଯ୍ସୀ ମିଶ୍ର ନାମକ ଜଣେ ଗୁରୁ ଗୁରୁକୁଳଟିଏ କରି ଛାତ୍ରମାନଙ୍କୁ ନିଜ ନିକଟରେ ରଖି ଶିକ୍ଷା ଦେଉଥିଲେ । ସେହି ଗ୍ରାମବାସୀଙ୍କଠାରୁ ତାଙ୍କ ନାମ ଶୁଣିବା ମାତ୍ରେ ତାଙ୍କଠାରୁ ସୁପାରିସ ପତ୍ରଟିଏ ଧରି ମାତାଙ୍କଠାରୁ ବିଦାୟ ନେଇ ହରିହର ଢେଙ୍କାନାଳ ଅଭିମୁଖେ ଯାତ୍ରା କଲେ । ବଣଜଙ୍ଗଲ ରାସ୍ତାରେ ବାଘଭାଲୁଙ୍କ ଭୟ କିମ୍ବା ଭୋକ ଉପାସ, ତୃଷ୍ଣା କୌଣସି ପ୍ରତିବନ୍ଧକ ତାଙ୍କୁ ବାଧା ଦେଇ ଅଟକ ରଖି ପାରିଲା ନାହିଁ । ଚାଲି ଚାଲି କେତେଦିନ ପରେ ସେ ସେହି ଗୁରୁଙ୍କ ନିକଟରେ ପହଞ୍ଚିଥିଲେ ।

## ୭ । ବିଦ୍ୟାଧ୍ୟୟନ :

ଗୁରୁ ଜଯ୍ସୀ ମିଶ୍ରେ ହରିହରଙ୍କର ଦୃଢ଼ ପ୍ରତିଜ୍ଞା ଓ ଜ୍ଞାନ ପିପାସା ଦେଖି ତାଙ୍କର ବୟସ ଅଧିକ ହୋଇଥିଲେ ମଧ୍ୟ ତାଙ୍କୁ ଛାତ୍ର ଭାବରେ ଗ୍ରହଣ କଲେ । ହରିହର ତାଙ୍କର ଅଦମ୍ୟ ଅଧ୍ୟବସାୟ ଓ ତୀକ୍ଷ୍ଣ ମେଧା ବଳରେ ଅସାଧ୍ୟ ସାଧନ କଲାଭଳି ମାତ୍ର ଅଢ଼େଇ ବର୍ଷ କାଳ ଭିତରେ ଗୁରୁଙ୍କଠାରୁ ଯାହା ଶିଖିବାର କଥା ତାହା ଶିଖି ନେଲେ । ସଂସ୍କୃତ ଭାଷା ଓ ବ୍ୟାକରଣରେ ବ୍ୟୁତ୍ପତ୍ତି ଲାଭ କରିବା ପରେ ଉଚ୍ଚଶାସ୍ତ୍ରମାନଙ୍କରେ ଶିକ୍ଷାଲାଭ ପାଇଁ ତାଙ୍କ ମନ ଆକୁଳ ହେଲା ।

Digitized by PPRACHIN, SOA

ଗୁରୁ ଜଗନ୍ନାଥ ମିଶ୍ର ତାଙ୍କ ପ୍ରତିଭାରେ ବିସ୍ମିତ ହୋଇଥିଲେ, ତାଙ୍କର ଉଚ୍ଚାଭିଳାଷ କଥା ଜାଣି ସେ ଗଙ୍ଗାଧରଙ୍କୁ ସାଥିରେ ସୁପାରିଶ ପତ୍ର ଦେଇ ଏକ ବଡ଼ ଅନୁଷ୍ଠାନରେ ବିଦ୍ୟାଶିକ୍ଷା କରିବା ପାଇଁ ବଙ୍ଗଳାର ନବଦ୍ୱୀପକୁ ପଠାଇ ଦେଲେ ।

ନବଦ୍ୱୀପରେ ଅଳ୍ପକାଳ ଭିତରେ ପାରଦର୍ଶିତା ଦେଖାଇ ନ୍ୟାୟ, ତର୍କଶାସ୍ତ୍ର, ପ୍ରଭୃତିରେ ସେ ଉଚ୍ଚ ଉପାଧିମାନ ହାସଲ କରି ପାରିଲେ । ସେହି ସମୟରେ ଦେଶର ନାନା ସ୍ଥାନରୁ ସେଠାକୁ ଆସୁଥିବା ବଡ଼ ବଡ଼ ପଣ୍ଡିତ-ମାନଙ୍କ ସାମନାରେ ପ୍ରାଞ୍ଜଳ ଭାବରେ ସଂସ୍କୃତ ଭାଷାରେ ବଡ଼ ବଡ଼ ଜଟିଳ ବିଷୟମାନଙ୍କୁ ସରଳ କରି ବକ୍ତୃତା ଦେଇ ଜଣେ ବିଦ୍ୱାନ ପଣ୍ଡିତଙ୍କର ସ୍ଥାନ ଅଧିକାର କଲେ । ସେ ସମୟରେ ସେ ବିଦ୍ୟାନଗରୀ ବାରଣସୀ ବା କାଶୀ ଯାଇ ପଣ୍ଡିତମାନଙ୍କ ସଙ୍ଗେ ବେଦବେଦାନ୍ତ ସମ୍ବନ୍ଧରେ ଆଲୋଚନା କରି ସୁନାମ ଅର୍ଜନ କରିଥିଲେ ।

## ୮ । ଭାରତରେ ଜାତୀୟ ଚେତନାର ଉନ୍ମେଷ :

ସେହି ଊନବିଂଶ ଶତାବ୍ଦୀର ମଧ୍ୟଭାଗ ବେଳକୁ ଭାରତର ନାନା ସ୍ଥାନରେ ବିଦେଶୀ ଶାସନର କୁଫଳ ଉପରେ କେତେକାଂଶରେ ଜାତୀୟ ଚେତନା ଜାଗ୍ରତ ହୋଇ ଆସୁଥିଲା । ପରସ୍ପର ଭିତରେ ଭେଦଭାବ ସମାଜର କୁସଂସ୍କାର ଓ ଭାରତୀୟ କର୍ମଚାରୀଙ୍କର ସ୍ୱାର୍ଥପରତା ଯୋଗୁ ଅଳ୍ପ ସଂଖ୍ୟକ ଇଂରେଜ ଶାସକ ଭାରତୀୟ ସୈନ୍ୟ ଓ କର୍ମଚାରୀମାନଙ୍କୁ ନିଜ ଅଧୀନରେ ରଖି ପାରିଥିଲେ । ସେମାନଙ୍କୁ ହାତବାରେସୀ ରୂପେ ବ୍ୟବହାର କରି ବିରାଟ ଭାରତ ଭୂଖଣ୍ଡକୁ ଶାସନ କରି ରଖିପାରୁଥିବା ବିଷୟ କେତେକ ଶିକ୍ଷିତ ବିଜ୍ଞ ଲୋକ ଉପଲବ୍ଧି କରି ପାରିଥିଲେ ।

ସେ ସମୟରେ ସରକାରୀ ଡେପୁଟି ପଦରେ ଥାଇ ମଧ୍ୟ ବଙ୍ଗର ବଙ୍କିମ ଚାଟର୍ଜୀ ବନ୍ଦେମାତରଂ ସଙ୍ଗୀତ ଓ ବିପ୍ଳବାତ୍ମକ ଉପନ୍ୟାସ ସବୁ ଲେଖିବା ଆରମ୍ଭ କରି ଦେଇଥିଲେ । ସମାଜରୁ କୁସଂସ୍କାର ଉତ୍ପାଟନ କରିବାପାଇଁ ରାଜା ରାମମୋହନ ବ୍ରାହ୍ମସମାଜ ଗଢ଼ିଥିଲେ । ଶ୍ରୀ ଦୟାନନ୍ଦ ସରସ୍ୱତୀ ହିନ୍ଦୁ ଧର୍ମକୁ ନୂତନ ରୂପ ଦେବାପାଇଁ ଆର୍ଯ୍ୟ ସମାଜ ପ୍ରତିଷ୍ଠା କରିଥିଲେ । ଅନ୍ୟ ପ୍ରଦେଶ-ମାନଙ୍କରେ ଏ ସବୁ ଚେତନା ଜାଗ୍ରତ ହେବା ସମୟରେ ଓଡ଼ିଶାର ଉନ୍ନତି କଳ୍ପେ କିଛି ହେବାର ପରିସ୍ଥିତି ନଥିଲା ।

Digitized by PPRACHIN, SOA

## ୯ । ହରିହରଙ୍କ ସ୍ୱଦେଶ ଚିନ୍ତା :

ହରିହର ବଙ୍ଗଳାର ନବଦ୍ୱୀପଠାରୁ ତାଙ୍କ ଉଚ୍ଚଶିକ୍ଷା ସମାପ୍ତ କରିବା ପରେ ବଙ୍ଗଦେଶ ଓ ପଡ଼ୋଶୀ ରାଜ୍ୟମାନଙ୍କର ବିଭିନ୍ନ ସ୍ଥାନ ବୁଲି, ଓଡ଼ିଶାର ତୁଳନାରେ ସେସବୁ ରାଜ୍ୟ ଲୋକଙ୍କ ସ୍ୱଚ୍ଛଳତା ଓ ସେମାନଙ୍କ ଉପରେ ନବ୍ୟ ଶିକ୍ଷାର ପ୍ରଭାବ ସମ୍ବନ୍ଧରେ ଯଥେଷ୍ଟ ଜ୍ଞାନ ଅର୍ଜନ କରି ପାରିଥିଲେ ।

ତାହା ଫଳରେ ହରିହର ନିଜ ରାଜ୍ୟର ଦୁରବସ୍ଥା କଥା ବୁଝିଲେ ତାଙ୍କ ହୃଦୟରେ ବିଦ୍ରୋହାଗ୍ନି ଜଳି ଉଠିଥିଲା । ନିଜ ରାଜ୍ୟର ଦାରିଦ୍ର୍ୟତା, ସମାଜର କଳୁଷ କାଳିମା, ବିଦ୍ୟା ଓ ଶିକ୍ଷା ପ୍ରସାରରେ ନିଷ୍କ୍ରିୟତା, ପ୍ରଭୃତି ହୃଦୟଙ୍ଗମ କରି ତାଙ୍କ ପ୍ରାଣ ବ୍ୟାକୁଳ ହୋଇଉଠିଲା ।

ଓଡ଼ିଶାରେ ୧୮୬୬ ନଅଙ୍କ ଦୁର୍ଭିକ୍ଷ ପର୍ଯ୍ୟନ୍ତ ସ୍କୁଲ କଲେଜ ତ ଦୂରର କଥା ଲୋଅର ପ୍ରାଇମେରି ସ୍କୁଲ ପର୍ଯ୍ୟନ୍ତ ବସିନଥିଲା । ଲୋକଙ୍କ ଶିକ୍ଷା ପ୍ରତି ସରକାର ନିସ୍ପୃହ ଥିଲେ । ଉଚ୍ଚ ସରକାରୀ ଚାକିରିରେ ଓଡ଼ିଶାରେ ଜଣେ ହେଲେ ଓଡ଼ିଆ ନ ଥିଲେ । ଜାତୀୟ ଚେତନା ଉନ୍ମେଷର ବାତାବରଣକୁ ସମ୍ପୂର୍ଣ୍ଣ ରୂପେ ଚପାଇ ଦିଆଯାଉଥିଲା । ବିଶେଷରେ ଅନ୍ନଚିନ୍ତା । ଉତ୍କଟ ଥିବାବେଳେ ଅବ-ଚେତନ ମନ ଭିତରୁ ଦେଶଭାବନା ବା କିପରି ଜାଗ୍ରତ ହୁଅନ୍ତା ? ତେଣୁ ଛିନ୍ନମସ୍ତା ଓଡ଼ିଆ ମାଆ "ଶାରୀରନାସ୍ତି କୁତୋଃ ବ୍ୟଥା" ଅବସ୍ଥାରେ ପଡ଼ି ରହିଥିଲା ।

## ୧୦ । ସ୍ୱଦେଶ ପ୍ରତ୍ୟାଗମନ :

ହରିହରଙ୍କ ପାଣ୍ଡିତ୍ୟ ଓ ପ୍ରତିଷ୍ଠା ଯୋଗୁ ସେ ଓଡ଼ିଶା ବାହାରେ ନାନା ଜମିଦାର ସଂସ୍ଥାଙ୍କ ବହୁ ପ୍ରଲୋଭନ ପାଇଥିଲେ । ଓଡ଼ିଶା ବାହାରେ ରହିଥିଲେ ହୁଏତ ସେ ଉଚ୍ଚ ସମ୍ମାନ ପାଇ ଅତି ସୁଖ ସ୍ୱାଚ୍ଛନ୍ଦ୍ୟରେ ଜୀବନ ନିର୍ବାହ କରି ପାରି-ଥାଆନ୍ତେ । ତାଙ୍କର ମନ କିନ୍ତୁ ନିଜର ଜନ୍ମଭୂମିର ଦୁର୍ଦ୍ଦଶାରେ ଅତି କାତର ହୋଇ ଉଠିଥିଲା । ସେ ସେଠାରେ ଅଧିକ ରହି ନ ପାରି ଜନନୀ ଜନ୍ମଭୂମିର ସେବାରେ ଆତ୍ମୋତ୍ସର୍ଗ କରିବା ପାଇଁ ନିଜ ଜନ୍ମସ୍ଥାନକୁ ଲେଉଟି ଆସିଥିଲେ ।

## ୧୧ । ଇଂରେଜ ଶାସକଙ୍କ ଶିକ୍ଷକ :

ସେହି ଇଂରେଜ ଅମଳରେ ଯେଉଁ ଶାସକମାନେ ଯେଉଁ ରାଜ୍ୟରେ ଅବସ୍ଥାପିତ ହେଉଥିଲେ ସେମାନଙ୍କୁ ସେଠାର ଲୋକଙ୍କ ଅବସ୍ଥା ଜାଣିବା ପାଇଁ

Digitized by PPRACHIN, SOA

ସେ ରାଜ୍ୟର ଭାଷା ଶିକ୍ଷା କରିବାକୁ ଚେଷ୍ଟାଥିଲା । ସେହି କାରଣରୁ ବିଦେଶୀ ଶାସକମାନେ ତାଙ୍କ ରାଜ୍ୟର ସଂସ୍କୃତି ଓ ଇତିହାସ ସଂଗ୍ରହ କରି ଉପାଦେୟ ପୁସ୍ତକ ଲେଖି ଯାଇଛନ୍ତି । ଓଡ଼ିଶାର ପ୍ରଥମ ଇତିହାସ ଲେଖକ ଜନ ହଣ୍ଟର ସେମାନଙ୍କ ମଧ୍ୟରୁ ଅନ୍ୟତମ ।

ସେତେବେଳେ ପୁରୀକୁ କଲେକ୍ଟର ହୋଇ ଆସୁଥିବା ଇଂରେଜ ଶାସକଙ୍କୁ ଆଞ୍ଚଳିକ ଭାଷା ଶିକ୍ଷା ଦେବା ପାଇଁ ସ୍ଥାନୀୟ ଭାଷାବିତ୍ ପଣ୍ଡିତ ଖୋଜା ପଡ଼ୁଥିଲା । ଇଂରେଜ ଗୁରୁ ହେଲେ ଜାତି ମାରାହୋଇଯିବା ଆଶଙ୍କାରେ ତତ୍କାଳୀନ ଓଡ଼ିଆ ପଣ୍ଡିତମାନେ ସେ କାର୍ଯ୍ୟ କରିବାକୁ ପ୍ରସ୍ତୁତ ନ ଥିଲେ ।

ପଣ୍ଡିତ ହରିହର ସଂସ୍କାରପନ୍ଥୀ ଥିଲେ । ସେପରି ଜାତି ଯିବାର ଭୟ ତାଙ୍କର ନଥିଲା । ଶାସକମାନଙ୍କ ସହିତ ସମ୍ପର୍କ ରଖିଲେ ଓଡ଼ିଆଙ୍କ ଦୁର୍ଗତି ଜଣାଇ ଓଡ଼ିଆଙ୍କ ପାଇଁ କିଛି କରି ହେବ ବୋଲି ସେ ଭାବୁଥିଲେ । ତେଣୁ ସାହେବମାନଙ୍କୁ ଓଡ଼ିଆ ଓ ସଂସ୍କୃତ ଶିକ୍ଷା ଦେବା ପାଇଁ ସେ ଆଗେଇ ଆସିଥିଲେ ।

## ୧୨ । ଶିକ୍ଷାର ପ୍ରସାର ପାଇଁ ହରିହରଙ୍କ ପ୍ରଚାର :

ସେ କାଳରେ ଓଡ଼ିଶାର ବିଶେଷରେ ପୁରୀ ଆଖ ପାଖର ଲୋକେ କୁସଂସ୍କାରର ବଶବର୍ତ୍ତୀ ହୋଇ କାଗଜ ଛୁଇଁ ନ ଥିଲେ । ସିଲେଇ କରି ଲୁଗା ନ ପିନ୍ଧିବା ଲୋକଙ୍କୁ ଧର୍ମଛଡ଼ା ବୋଲି ମନେ କରୁଥିଲେ । ଇଂରେଜଙ୍କ ସ୍ଥାପିତ ସ୍କୁଲରେ ପଢ଼ିବାଟା ଏକାବେଳକେ ଖ୍ରୀଷ୍ଟାନ ହେବା ସଙ୍ଗେ ସମାନ ବୋଲି ମନେ କରାଯାଉଥିଲା ।

ହରିହର ସାହେବଙ୍କ ସଙ୍ଗେ ମିଶି ସେମାନଙ୍କୁ ଶିକ୍ଷାଦାନ କରିବା ଯୋଗୁ ସମାଜପତିମାନଙ୍କର ଚକ୍ଷୁଃଶୂଳ ହେଲେ । ସେମାନେ ତାଙ୍କର ନାନା କୁତ୍ସା ରଟନା କଲେ । ସେ ସବୁ ପ୍ରତି କର୍ଣ୍ଣପାତ ନ କରି ହରିହର ଶିକ୍ଷା ପ୍ରଚାର ପାଇଁ ବାହାରି ପଡ଼ିଲେ । ତାଙ୍କର ମୁଖ୍ୟ କାର୍ଯ୍ୟ ହେଲା, ସାହେବଙ୍କ ପରି ପ୍ୟାଣ୍ଟ କୋଟ୍ ପିନ୍ଧି କାଗଜ ବସ୍ତା ସଙ୍ଗରେ ଧରି, ଘୋଡ଼ାରେ ବସି ଗ୍ରାମ ଗ୍ରାମ ବୁଲି ଲୋକଙ୍କୁ ବୁଝାଇ କାଗଜ ବସ୍ତା ବାଣ୍ଟିବା ଏବଂ ସେଥି ସଙ୍ଗେ ସଙ୍ଗେ ଯଥାସମ୍ଭବ ଶିକ୍ଷା ବିଭାଗ କର୍ମକର୍ତ୍ତାମାନଙ୍କୁ ଧରି ରାଜ୍ୟରେ ସ୍କୁଲମାନ ବସାଇବା । ସେହି ସମୟରେ ବଙ୍ଗ ପ୍ରେସିଡେନ୍‌ସିର ସର୍ବୋଚ୍ଚ ଶିକ୍ଷା ନିର୍ଦ୍ଦେଶକ ଥିଲେ ବିମଲ ସାହେବ ।

Digitized by PPRACHIN, SOA

ଓଡ଼ିଶାରେ ଶିକ୍ଷାର ପ୍ରସାର ନ ଥିବା ବିଷୟ ପ୍ରତି ହରିହର ବିମଳ ସାହେବଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ସେଥିରେ ବଙ୍ଗ ସରକାରଙ୍କ ଆଖି ଖୋଲିଥିଲା ।

## ୧୩ । ପ୍ରଥମ ଓଡ଼ିଶା ଏଜୁକେଶନ କମିଟି :

ବଙ୍ଗ ସରକାର ଓଡ଼ିଶା ଡିଭିଜନରେ ଶିକ୍ଷା ପ୍ରସାରର ବ୍ୟବସ୍ଥା କରିବା ପାଇଁ ତତ୍ପର ହୋଇ ଉଠିଥିଲେ । ତତ୍କାଳୀନ ଶାସକ ଆର. ଏମ. ସୋର୍‌ଙ୍କ ଦ୍ୱାରା ଓଡ଼ିଶା ପାଇଁ ପ୍ରଥମ ସରକାରୀ ଏଜୁକେଶନ କମିଟି ଗଢ଼ା ଯାଇଥିଲା । ସେହି କମିଟିରେ ଯୁବକ ପଣ୍ଡିତ ହରିହର, ଆଇନେଜୀ ସଚ୍ଚିଦାନନ୍ଦ ଦାସ ଏବଂ ଅନ୍ୟ ଜଣେ ସଦସ୍ୟ ରହିଥିବାର, ଓଡ଼ିଶା ଅଭିଲେଖାଗାର ତରଫରୁ ପ୍ରକାଶ ପାଇଥିବା ରିପୋର୍ଟ ଓ ପୁରୁଣା ଉତ୍କଳ ଦୀପିକାରୁ ଜଣାପଡ଼େ । ସେହି କମିଟି ଓଡ଼ିଶାରେ ଶିକ୍ଷା ପ୍ରସାରର ପ୍ରଥମ ପଥପ୍ରଦର୍ଶକ ହୋଇଥିଲା ।

## ୧୪ । ଭର୍ଣ୍ଣାକୁଲର ସ୍କୁଲ ସ୍ଥାପନ :

ସ୍ଥାନୀୟ ଭାଷା ମାଧ୍ୟମରେ ନୂତନ ଶିକ୍ଷାର ବ୍ୟବସ୍ଥା ପାଇଁ ତତ୍କାଳୀନ ସରକାର ଭର୍ଣ୍ଣାକୁଲର ସ୍କୁଲର ଉଦ୍ଭାବନ କରିଥିଲେ । ସେଥିରେ ଇଂରେଜୀ ଭାଷା ଛଡ଼ା ଏକ ମାଇନର ସ୍କୁଲର ସମସ୍ତ ବିଷୟ ମାତୃଭାଷାରେ ଶିକ୍ଷା ଦିଆ-ଯାଉଥିଲା ।

ଶାସକମାନଙ୍କ ଭିତରେ ପଣ୍ଡିତ ହରିହରଙ୍କ ଆଦର ଓ ପ୍ରତିଷ୍ଠା ବଢି-ଥିଲା । ନିଜେ ବିମଳ ସାହେବ ହରିହରଙ୍କୁ ଅତ୍ୟନ୍ତ ସମ୍ମାନ ପ୍ରଦର୍ଶନ କରୁଥିଲେ । ହରିହରଙ୍କ ପ୍ରସ୍ତାବରେ ବିମଳ ସାହେବ ଓଡ଼ିଶାର ପୁରପଲ୍ଲୀରେ ଭର୍ଣ୍ଣାକୁଲର ସ୍କୁଲ ସବୁ ବସିବାରେ ସାହାଯ୍ୟ କରିଥିଲେ । ସେତେବେଳେ ସେପରି ସ୍କୁଲ ସବୁ ସ୍ଥାନୀୟ ଲୋକଙ୍କ ଦ୍ୱାରା ସ୍ଥାପିତ ହେଲେ ସରକାରଙ୍କଠାରୁ ଶିକ୍ଷକଙ୍କ ଦରମା-ବାବଦକୁ କିଛି ଅନୁଦାନ ମିଳୁଥିଲା ।

ରକ୍ଷଣଶୀଳ ସମାଜପତିମାନେ ସେପରି ଶିକ୍ଷା ଅନୁଷ୍ଠାନ ପ୍ରତିଷ୍ଠାର ମଧ୍ୟ ଘୋର ବିରୋଧ କରୁଥିଲେ । ତଥାପି ହରିହର ପୁରପଲ୍ଲିରେ ବୁଲି ସେପରି ଅନୁଷ୍ଠାନ ପ୍ରତିଷ୍ଠା କରାଉଥିଲେ । ଲୋକେ କୁସଂସ୍କାର ବର୍ଜନ କରି ସେପରି ସ୍କୁଲ ସବୁ ଗଢ଼ି ନିଜ ନିଜର ପିଲାମାନଙ୍କୁ ଶିକ୍ଷାଦାନ କରାଇବା ପାଇଁ ପ୍ରବର୍ତ୍ତାଇବାରେ ଲାଗିଥିଲେ ।

Digitized by PPRACHIN, SOA

## ୧୫ । ନିଜ ଅର୍ଜନରେ ସ୍କୁଲ ପ୍ରତିଷ୍ଠା :

ସାଧାରଣତଃ ବିଭିନ୍ନ କରଦ ରାଜ୍ୟର ପଣ୍ଡିତ ସଭାମାନଙ୍କରେ ଯୋଗଦେଇ ହରିହର ଯେଉଁ ସ୍ୱଳ୍ପ ବିଦାୟ ଧନ ଅର୍ଜନ କରୁଥିଲେ ସେଥିରେ ସେ ନିଜ ଖର୍ଚ୍ଚ ଭୁଲିଉଥିଲେ । ତାଙ୍କ ଘରର ଅବସ୍ଥା ସ୍ୱଚ୍ଛଳ ନଥିଲା । ନିଜ ଅର୍ଜନରୁ ତାଙ୍କୁ ତାଙ୍କ ମାତା ଓ ପତ୍ନୀଙ୍କ ଭରଣପୋଷଣ ଦାୟିତ୍ୱ ବହନ କରିବାକୁ ପଡ଼ୁଥିଲା । ସେସବୁ ସତ୍ତ୍ୱେ ସେ ନିଜ ଖର୍ଚ୍ଚରେ ପାଇକବହୁଳ ଖୁର୍ଦ୍ଧା ଓ ବ୍ରାହ୍ମଣବହୁଳ ନିଜ ଗ୍ରାମ ଶ୍ରୀରାମଚନ୍ଦ୍ରପୁରରେ ନିଜର ସମ୍ପୂର୍ଣ୍ଣ ବ୍ୟୟରେ ଭର୍ଣ୍ଣାକୁଲର ସ୍କୁଲ ବସାଇଥିଲେ । ସମୟ ମିଳିଲେ ନିଜେ ସେସବୁ ସ୍କୁଲରେ ଶିକ୍ଷାଦାନ କରି ଅନ୍ୟ ଶିକ୍ଷକମାନଙ୍କୁ ତାଲିମ ଦେଉଥିଲେ । ତାଙ୍କର ପ୍ରଗାଢ଼ ଉଦ୍ୟମ ଯୋଗୁ ରକ୍ଷଣଶୀଳଙ୍କ ପ୍ରତିରୋଧ ସତ୍ତ୍ୱେ ସେହି ଭର୍ଣ୍ଣାକୁଲର ସ୍କୁଲମାନଙ୍କରେ ଆସ୍ତେ ଆସ୍ତେ ଛାତ୍ର ସଂଖ୍ୟା ବଢ଼ିବାକୁ ଲାଗିଲା । ସ୍ଥାନୀୟ ଛାତ୍ରମାନେ ସେଥିରେ ପଢ଼ିବାପାଇଁ ସୁଯୋଗ ପାଇଲେ ।

## ୧୬ । ତାଙ୍କ ସ୍ଥାପିତ ଗ୍ରାମ ଭର୍ଣ୍ଣାକୁଲର ସ୍କୁଲ :

ପରବର୍ତ୍ତୀ କାଳରେ ତାଙ୍କ ତିରୋଧାନ ପରେ ମଧ୍ୟ ତାଙ୍କ ଦ୍ୱାରା ସ୍ଥାପିତ ଶ୍ରୀରାମଚନ୍ଦ୍ରପୁର ଭର୍ଣ୍ଣାକୁଲର ସ୍କୁଲଟି ପ୍ରଶଂସାର ସହିତ ଶିକ୍ଷାଦାନ କରି ଚାଲି-ଥିଲା । ସେ ସ୍କୁଲରୁ ଶିକ୍ଷା ଲାଭ କରି ସରକାରୀ ବୃତ୍ତି ପାଇ, ଡେପୁଟି ଗୋପୀନାଥ ଦାସ, ଆଚାର୍ଯ୍ୟ ହରିହର ଦାସ, ପଣ୍ଡିତ ନୀଳକଣ୍ଠ ଦାସ, ପ୍ରଫେସର ଅନନ୍ତ ମିଶ୍ର, ପଞ୍ଚସଖାରୁ ଅନ୍ୟତମ କୃପାସିନ୍ଧୁ ମିଶ୍ର, ଆଡ଼ଭୋକେଟ ହରିହର ଦାସ, ପ୍ରଭୃତି କୃତି ଛାତ୍ରମାନେ ଉଚ୍ଚଶିକ୍ଷା ପାଇବାର ସୁବିଧା ପାଇଥିଲେ । ସେମାନେ ଇଂରାଜୀ ପାଠ୍ୟକ୍ରମଥିବା ପୁରୀ ଜିଲ୍ଲା ସ୍କୁଲରେ ବିଦ୍ୟାଧ୍ୟୟନ କରିବାର ସୁଯୋଗ ପାଇଥିଲେ । ତା ପୂର୍ବରୁ ପୁରୀ ଜିଲ୍ଲା ସ୍କୁଲ ପ୍ରଭୃତି ସରକାରୀ ସ୍କୁଲରେ କେବଳ ପଡ଼ୋଶୀ ସରକାରୀ କର୍ମଚାରୀଙ୍କ ପିଲାମାନେ ପଢ଼ୁଥିଲେ । ଗ୍ରାମର ଭର୍ଣ୍ଣାକୁଲର ସ୍କୁଲ ସହିତ ପଣ୍ଡିତ ହରିହର ସେହି ଗ୍ରାମରେ ସଂସ୍କୃତ ବିଦ୍ୟାଳୟଟିଏ ମଧ୍ୟ ସ୍ଥାପନ କରିଥିଲେ । ପଣ୍ଡିତ ହରିହରଙ୍କ ତିରୋଧାନର ବହୁ ବର୍ଷ ପରେ ତାଙ୍କ ପବିତ୍ର ସ୍ମୃତିରେ ପ୍ରଭାବିତ ପଣ୍ଡିତ ଗୋପବନ୍ଧୁଙ୍କ ପ୍ରେରଣାରେ ଗୋପବନ୍ଧୁଙ୍କ ସାଥି, ସେହି ସ୍କୁଲର ପୁରାତନ ଛାତ୍ରମାନଙ୍କ ସହଯୋଗରେ ସେ ଦୁଇଟିଯାକ ସ୍କୁଲକୁ ସତ୍ୟବାଦୀକୁ ସ୍ଥାନାନ୍ତରିତ କରାଯାଇ ସତ୍ୟବାଦୀ ବନବିଦ୍ୟାଳୟର ମୂଳଦୁଆ ପଡ଼ିଥିଲା ।

Digitized by PPRACHIN, SOA

## ୧୭ । ଛାତ୍ରବନ୍ଧୁ ପଣ୍ଡିତ ହରିହର :

ନିଜର ଅଭାବ ସତ୍ତ୍ୱେ ହରିହର ବୁଲି ବୁଲି ଛାତ୍ରମାନଙ୍କୁ ବନ୍ଧି ବାଣ୍ଟୁଥିଲେ । ପୁରୀରେ ପଢ଼ୁଥିବା ଅଭାବ ଛାତ୍ରମାନଙ୍କୁ ନିଜ ଘରେ ରଖି ନିଜ ହାତରୁ ଖାଇବାକୁ ଦେଇ ଲୁଚାଇକରି ସେମାନଙ୍କୁ ଇଂରେଜି ପଢ଼ାଇବା କାର୍ଯ୍ୟ ଆରମ୍ଭ କରି ଦେଇଥିଲେ । ସେଥିରେ ସେ ତାଙ୍କର ସମସ୍ତ ରୋଜଗାର ବ୍ୟୟ କରିଦେବାକୁ କୁଣ୍ଠାବୋଧ କରୁନଥିଲେ । ଏହିସବୁ କାର୍ଯ୍ୟପାଇଁ ଯେପରିକ ସେ ରୋଜଗାର କରୁଥିଲେ । ସେ ବିବାହିତ ହୋଇଥିଲେ ମଧ୍ୟ କାର୍ଯ୍ୟବ୍ୟସ୍ତ ରହି ଗ୍ରାମକୁ ନଯାଇ ଏକପ୍ରକାର ବ୍ରହ୍ମଚାରୀ ଜୀବନ ଯାପନ କରୁଥିଲେ । ଦେଶ କାର୍ଯ୍ୟ ସାମନାରେ ନିଜର ସ୍ୱାର୍ଥ ଓ ଭୋଗ ସମ୍ଭୋଗ ତାଙ୍କ ପାଇଁ ଅତ୍ୟନ୍ତ ତୁଚ୍ଛ ଥିଲା ।

## ୧୮ । ଛାତ୍ର ହରିସିଂହ ମିଶ୍ର :

ପଣ୍ଡିତ ଗୋପବନ୍ଧୁ ଓ ନୀଳକଣ୍ଠ, ପ୍ରଭୃତିଙ୍କ ସୁଯୋଗ୍ୟ ଶିକ୍ଷକ, ପୁରୀର ପ୍ରଥମ ବି. ଏ. ଡିଗ୍ରୀଧାରୀ ସ୍ୱର୍ଗତ ହରିସିଂହ ମିଶ୍ର ହରିହରଙ୍କର ସେପରି ଛାତ୍ରମାନଙ୍କ ଭିତରୁ ଜଣେ ଥିଲେ । ଗୋପବନ୍ଧୁ, ନୀଳକଣ୍ଠ, ପ୍ରଭୃତି ହରିସିଂହଙ୍କ ବ୍ୟକ୍ତିତ୍ୱ ପ୍ରତି ଅତ୍ୟନ୍ତ ଆକୃଷ୍ଟ ଥିଲେ । ହରିସିଂହ ହରିହରଙ୍କ ଆଦର୍ଶକୁ ଆଖି ଆଗରେ ରଖି ତାଙ୍କ ଛାତ୍ରମାନଙ୍କୁ ଉପଯୁକ୍ତ କରି ଗଢ଼ିବାକୁ ଉଦ୍ୟମ କରୁଥିଲେ । ହରିସିଂହ ଜୀବିତ ଥିବାଯାଏ ପଣ୍ଡିତ ଗୋପବନ୍ଧୁ, ନୀଳକଣ୍ଠ ପ୍ରଭୃତି ତାଙ୍କ ସଙ୍ଗେ ସମ୍ପର୍କ ରଖି ଦରକାରବେଳେ ପରାମର୍ଶ ପାଇଁ ତାଙ୍କ ଦ୍ୱାରସ୍ଥ ହେଉଥିଲେ ।

## ୧୯ । ଛାତ୍ର ସିଦ୍ଧେଶ୍ୱର ମିଶ୍ର :

ସ୍ୱର୍ଗତ ହରିସିଂହ ମିଶ୍ରଙ୍କ ଭଳି ବୀରପ୍ରତାପପୁର ଶାସନର ସ୍ୱର୍ଗତ ରାୟ ବାହାଦୂର ବୈଦ୍ୟନାଥ ମିଶ୍ରଙ୍କ ପିତା ସ୍ୱର୍ଗତ ସିଦ୍ଧେଶ୍ୱର ମିଶ୍ର ହରିହରଙ୍କ ପୁରୀ ଘରେ ରହି ପଢ଼ୁଥିବା ଛାତ୍ରମାନଙ୍କ ମଧ୍ୟରୁ ଅନ୍ୟତମ । ହରିହରଙ୍କ ଅନ୍ୟାନ୍ୟ ପ୍ରିୟ ଛାତ୍ରଙ୍କ ପରି ସେ ଶେଷଯାଏ ହରିହରଙ୍କ କଥାରେ ରହି ଦେଶ କାର୍ଯ୍ୟରେ ଲାଗିଥିଲେ ।

## ୨୦ । ମୁକ୍ତାର ରାମଚନ୍ଦ୍ର ଦାସ :

ଭିଙ୍ଗାରପୁରର ମନସ୍ୱୀ ମୁକ୍ତାର ରାମଚନ୍ଦ୍ର ଦାସ ହରିହରଙ୍କ ବ୍ୟକ୍ତିତ୍ୱରେ ଜୀବନସାରା ମୁଗ୍ଧ ରହିଥିଲେ । ହରିହର ପ୍ରକୃତିର ବିଶ୍ଳେଷଣ କରି ପୁରୀର

Digitized by PPRACHIN, SOA

ଛାତ୍ରମାନଙ୍କୁ ସେଥିରେ ଉଦ୍‌ବୁଦ୍ଧ କରି ଦେଶପ୍ରେମୀ ରୂପେ ଗଢ଼ିବା ତାଙ୍କର ପ୍ରଧାନ କାର୍ଯ୍ୟ ଥିଲା । ହରିହରଙ୍କ ପରି ସେ ମଧ୍ୟ ତାଙ୍କର ସମସ୍ତ ରୋଜଗାର ଗ୍ରନ୍ଥମାନଙ୍କ ପାଇଁ ଖର୍ଚ୍ଚ କରି ଦେଉଥିଲେ । ସେ ଗୋପବନ୍ଧୁ, ନୀଳକଣ୍ଠ ପ୍ରଭୃତିଙ୍କର ଜ୍ଞାନ ଗୁଣୁଥିଲେ । ସେ ସାହିତ୍ୟଠାରୁ ରାଜନୀତି ଓ ଦେଶର ଦୁରବସ୍ଥା ପ୍ରଭୃତି ନାନା ବିଷୟରେ ଛାତ୍ରମାନଙ୍କ ସଙ୍ଗେ ଆଲୋଚନା କରୁଥିଲେ ।

## ୨୧ । ହରିହରଙ୍କ ପ୍ରଭାବ :

ଏହିପରି ସେକାଳେ ହରିହରଙ୍କ ପ୍ରଭାବ ଓ ପ୍ରଚେଷ୍ଟା ଥିଲା, ଅଦ୍ଭୁତ ଓ ସର୍ବତୋମୁଖୀ । ସେକାଳର ଅତି ରକ୍ଷଣଶୀଳ ଶାସନୀ ବ୍ରାହ୍ମଣ ଘରେ ଜନ୍ମ ହୋଇ ଖାଲି ସଂସ୍କୃତ ଓ ସଂସ୍କୃତରେ ତର୍କଶାସ୍ତ୍ର ପଢ଼ି ଏପରି ପରିସ୍ଥିତି କଳନାରେ ପୁରୋଦୃଷ୍ଟି ପର ହେବା କ୍ୱଚିତ ଦେଖାଯାଏ । ତାଙ୍କ ବିଦ୍ୟାର କଳନା ଆହରଣ ଓ ପ୍ରଚାର ଆଦି ଏକ ପ୍ରକାର ଅଦ୍ୱିତୀୟ ଥିଲା । ଯିଏ ତାଙ୍କୁ ଜାଣିଥିଲେ ବା ତାଙ୍କ ସମ୍ପର୍କରେ ଆସିଥିଲେ ସେମାନେ ଜୀବନସାରା ତାଙ୍କ ଦ୍ୱାରା ପ୍ରଭାବିତ ହୋଇ ରହିଥିଲେ ।

## ୨୨ । ରକ୍ଷଣଶୀଳଙ୍କ ଦ୍ୱାରା ହରିହରଙ୍କ ବିରୁଦ୍ଧରେ କୁତ୍ସା ପ୍ରଚାର :

ପଣ୍ଡିତ ହରିହର ଆଧୁନିକ ପୋଷାକ ପିନ୍ଧି ଛୁଆଁ ଅଛୁଆଁ ନ ମାନି ବିଦ୍ୟା ପ୍ରସାର କାର୍ଯ୍ୟରେ ଲାଗି ରହିବା, ରକ୍ଷଣଶୀଳଙ୍କ ଭିତରେ ବହୁ ଗୁଞ୍ଜରଣ ସୃଷ୍ଟି କରିଥିଲା । ସେମାନଙ୍କ ଭିତରୁ କେହି କେହି ଦଳ ମଡାଇ ତାଙ୍କର ବିରୋଧ କରିବାରେ ବି ଲାଗି ଯାଇଥିଲେ ; କିନ୍ତୁ ତାଙ୍କର ବିଚକ୍ଷଣ ଯୁକ୍ତିମତା, ବାଗ୍ମିତା, ମଧୁର ସ୍ୱଭାବ ଓ ଅତ୍ୟନ୍ତ ପରପ୍ରାଣତା ତଥା ନିଃସ୍ୱାର୍ଥ କର୍ମରେ ଆନ୍ତରିକ ଆତ୍ମଦାନ ହେତୁରୁ କୌଣସି ପ୍ରତ୍ୟକ୍ଷ ବିରୋଧ ଛିଡ଼ି ପାରୁନଥିଲା । ଲୋକେ ତାଙ୍କ ପ୍ରତି ଅତ୍ୟନ୍ତ ଆକୃଷ୍ଟ ହୋଇ ପଡୁଥିଲେ ଓ ତାଙ୍କୁ ବଡ଼ ଖାତିର ଓ ଭକ୍ତି କରୁଥିଲେ । ତାଙ୍କ ବିରୁଦ୍ଧରେ ଧର୍ମଦ୍ରୋହୀ, ନାସ୍ତିକ, ପ୍ରଭୃତିର ଅପପ୍ରଚାରକୁ ସାଧାରଣ ଲୋକେ କର୍ଣ୍ଣପାତ କରୁନଥିଲେ । ହରିହର ମଧ୍ୟ ନିଜର ଉଚ୍ଚ ଉଦ୍ଦେଶ୍ୟ ସାଧନରେ ଏତେ ତନ୍ମୟ ଥିଲେ ଯେ, ଏ ସବୁ ବିରୋଧ ଓ ଭକ୍ତି ମାପିବାକୁ ତାଙ୍କୁ ଅବକାଶ ନଥିଲା । ସେ ଥିଲେ ଯଥାର୍ଥ ମନସ୍ୱୀ କର୍ମୀ ପୁରୁଷର ଯେପରିକି ଏକ ଅବତାର ।

Digitized by PPRACHIN, SOA

## ୨୩ । ବିଦେଶୀ ବିଦ୍ୱାନଙ୍କ ସହିତ ସମ୍ପର୍କ :

ସୁନାମଧନ୍ୟ ଇଂରେଜ ବିଦ୍ୱାନ ବୀମ୍‌ସ୍ ସାହେବ ସେତେବେଳେ ପୁରୀର କଲେକ୍‌ଟର ଥିଲେ । ବିମ୍‌ସ୍ ସାହେବ ବହୁ ଭାଷାରେ ପଣ୍ଡିତ ଓ ବିଚକ୍ଷଣ ଜ୍ଞାନୀ ବ୍ୟକ୍ତି ଥିଲେ । ଗୁଣଗ୍ରାହୀ ବିମସ୍ ସାହେବ ଓଡ଼ିଆ ଓ ସଂସ୍କୃତ ଭାଷା ଶିକ୍ଷା ପାଇଁ ହରିହରଙ୍କୁ ନିଜର ଗୃହ ଶିକ୍ଷକ ରୂପେ ନିଯୁକ୍ତ କରିଥିଲେ ; କିନ୍ତୁ ଦୁହେଁ ଦୁହିଁଙ୍କର ଶିକ୍ଷକ ଓ ଦୁହେଁ ଦୁହିଁଙ୍କର ଶିଷ୍ୟ ପାଲଟି ଯାଇଥିଲେ । ହରିହରଙ୍କଠାରୁ ବୀମ୍‌ସ୍ ଓଡ଼ିଆ ଓ ସଂସ୍କୃତ ପଢ଼ିଲେ, ହରିହର ବୀମ୍‌ସ୍‌ଙ୍କଠାରୁ ପଢ଼ିଲେ, ଗ୍ରୀକ୍, ଇଂରେଜ ଓ ତହିଁ ସଙ୍ଗେ ହିନ୍ଦ୍-ୟୁରୋପୀୟ ଆର୍ଯ୍ୟ ଭାଷାମାନଙ୍କର ତୁଳନାତ୍ମକ ଶବ୍ଦ ଓ ବ୍ୟାକରଣ ତତ୍ତ୍ୱ । ଅଳ୍ପ ଦିନ ଭିତରେ ଦୁହେଁ ଦୁହିଁଙ୍କ ଶିକ୍ଷାରେ ବ୍ୟୁତ୍ପନ୍ନ ହେଲେ । ବୀମ୍‌ସ୍‌ଙ୍କ ପ୍ରସିଦ୍ଧ 'ଆର୍ଯ୍ୟ ଭାଷା ସପ୍ତକ' (Seven Aryan Languages) ଗ୍ରନ୍ଥ ପ୍ରକାଶିତ ହୋଇଥିଲା । ସେ ଗ୍ରନ୍ଥ ଲେଖିବାରେ ଓ ଲେଖିବାର କଳ୍ପନାରେ ମଧ୍ୟ ହରିହରଙ୍କ ସାହଚର୍ଯ୍ୟ ଓ ପ୍ରଭାବ ରହିଥିଲା ।

ହରିହର ଭାରତର ଅନ୍ୟାନ୍ୟ ଚଳିତ ଆର୍ଯ୍ୟ ଭାଷା ବିଶେଷତଃ ହିନ୍ଦୀରେ ସୁଦକ୍ଷ ଥିଲେ ମଧ୍ୟ ତୁଳନାତ୍ମକ ତତ୍ତ୍ୱର ଶିକ୍ଷା ଓ ଅନୁସନ୍ଧାନ ଆରମ୍ଭ ମାତ୍ର କରୁଥିଲେ । ତେଣୁ ବୀମ୍‌ସ୍‌ଙ୍କ ସେପରି ଗ୍ରନ୍ଥଲେଖା ହୁଏତ କଳ୍ପନାରେ ମାତ୍ର ଅଙ୍କୁରିତ ହେଉଥିଲା ।

## ୨୪ । ବୀମ୍‌ସ୍‌ଙ୍କ ସହିତ ବନ୍ଧୁତ୍ୱ :

ବୀମ୍‌ସ୍‌ଙ୍କ ସାହଚର୍ଯ୍ୟ ଫଳରେ, ପ୍ରସିଦ୍ଧ ଗ୍ରୀକ୍ କବି ସଫୋକ୍ଲସ୍‌ଙ୍କ ନାଟକମାନ ଏକାବେଳକେ ଓଡ଼ିଆରେ ଅନୁବାଦ କରିବାର ମନସ୍ଥ କରି ହରିହର କାର୍ଯ୍ୟ ଆରମ୍ଭ କରିଥିଲେ । ସେ ସଫୋକ୍ଲସ୍‌ଙ୍କ 'ଏଡ଼ିପସ୍ ଦି କିଙ୍ଗ' ନାମକ କାବ୍ୟକୁ ସଂସ୍କୃତରେ ମଧ୍ୟ ଅନୁବାଦ କରିଥିଲେ । ସଂସ୍କୃତ ଓ ଓଡ଼ିଆ ପରି ହରିହର ଗ୍ରୀକ୍ ଭାଷାରେ ଅନର୍ଗଳ ବକ୍ତୃତା ଦେଇ ପାରୁଥିଲେ ।

ହରିହର ଓ ବୀମ୍‌ସ୍‌ଙ୍କ ଭିତରେ ଶିକ୍ଷାକୁ ଭିତ୍ତିକରି ଏପରି ଆତ୍ମୀୟତା ହୋଇଯାଇଥିଲା ଯେ, ବୀମ୍‌ସ୍ ପୁରୀ ଛାଡ଼ି ଅନ୍ୟତ୍ର ବଦଳି ହୋଇ ଯିବାପରେ ହରିହରଙ୍କୁ ସଂସ୍କୃତରେ ଚିଠି ଲେଖୁଥିଲେ ଓ ହରିହର ତାଙ୍କୁ ଗ୍ରୀକ୍‌ରେ ଉତ୍ତର ଦେଉଥିଲେ ।

Digitized by PPRACHIN, SOA

ହରିହରଙ୍କ ଗ୍ରନ୍ଥ ସିଦ୍ଧେଶ୍ୱର ମିଶ୍ରଙ୍କ ନିକଟରେ ହରିହରଙ୍କୁ ଷ୍ଟାମ୍‌ସ୍ ସାହେବ ଲେଖିଥିବା ସଂସ୍କୃତ ଚିଠିରୁ କେତେଖଣ୍ଡ ରହିଥିଲା । ଷ୍ଟାମସ୍ ସାହେବ ନିଜ ମାତାଙ୍କ ଫଟୋ ହରିହରଙ୍କ ନିକଟକୁ ପଠାଇ ତା ସଙ୍ଗେ ସେହି ବିଷୟରେ ଛୋଟିଏ ଚିଠି ଲେଖିଥିଲେ । ସେ ସଂସ୍କୃତ ଚିଠିଟିର ସରଳ ସୁନ୍ଦର ଉପଯୋଗୀ ଭାଷା ବଡ଼ ଭାବଦ୍ୟୋତକ ଥିଲା । ସେ ଫଟୋଟି ଉପରେ ଷ୍ଟାମ୍‌ସ୍ ସାହେବ ଲେଖିଥିଲେ—"ମମ ମାତୁଃ ଛବି ପ୍ରତିମା" । ହରିହରଙ୍କୁ ଷ୍ଟାମସ୍ କିପରି ଏକ ଅନ୍ତରଙ୍ଗ ବନ୍ଧୁ ଦୃଷ୍ଟିରେ ଦେଖୁଥିଲେ ତାହା ସେ ପତ୍ରରୁ ଜଣା ପଡ଼ୁଥିଲା । ଯେଉଁକାଳେ ଶାସକ ଇଂରେଜ ଗୋଷ୍ଠୀ ନିଜକୁ ଅତି ଉଚ୍ଚ ଜାତି ବୋଲି ମନେକରି ଭାରତୀୟଙ୍କୁ କ୍ରୀତଦାସ ଜଙ୍ଗଲି ପରି ବ୍ୟବହାର ଦେଖାଉଥିଲେ, ସେହି ସମୟରେ ଷ୍ଟାମ୍‌ସ୍ ସାହେବଙ୍କ ପରି ଶାସକମାନେ ହରିହରଙ୍କ ପ୍ରତିଭାରେ ମୁଗ୍‌ଧ ହୋଇ ତାଙ୍କୁ ନିଜର ଆତ୍ମୀୟ ପରି ବ୍ୟବହାର ଦେଖାଇବା ଆଶ୍ଚର୍ଯ୍ୟ ଜନକ ପରି ମନେହୁଏ ।

## ୨୫ । ବିଦେଶରେ ଭାରତୀୟ ସଂସ୍କୃତି ପ୍ରଚାରର ଯୋଜନା :

ଷ୍ଟାମସଙ୍କ ପରେ ଗେଡ଼ସ୍ ସାହେବ ପୁରୀକୁ କଲେକ୍‌ଟର ହୋଇ ଆସିଲେ । ସେ ମଧ୍ୟ ହରିହରଙ୍କ ଠାରୁ ଓଡ଼ିଆ ଓ ସଂସ୍କୃତ ଶିଖିବାର ବ୍ୟବସ୍ଥା କଲେ । ଗେଡ଼ସ୍ ହରିହରଙ୍କ ସମ୍ପର୍କରେ ଆସି ତାଙ୍କର ଅଗାଧ ପାଣ୍ଡିତ୍ୟରେ ଏପରି ମୁଗ୍‌ଧ ହୋଇଥିଲେ ଯେ, ବେଦ ବେଦାନ୍ତ, ପ୍ରଭୃତିରେ ୟୁରୋପ ମହାଦେଶରେ ହରିହରଙ୍କୁ ବକ୍ତୃତା ଦିଆଇବା ପାଇଁ ନିଜ ସଙ୍ଗରେ ନେଇ ଯିବାପାଇଁ ସବୁ ବ୍ୟବସ୍ଥା କରି ସାରିଥିଲେ । ଏପରିକି ସେଥିପାଇଁ ହରିହରଙ୍କ ଲାଗି ବିଦେଶୀ ଗରମ ପୋଷାକ ପତ୍ର ମଧ୍ୟ ତିଆରି ହୋଇ ସାରିଥିଲା ।

## ୨୬ । ପୁରୀରେ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା :

ରାଜ୍ୟର ଲୋକେ ପଡ଼ୋଶୀଙ୍କୁ ଡରି ତେଲୁଗିଯୋକ୍ ପରି ଜାକି ଜୁକି ହୋଇ ମୂର୍ଖ ଭାବରେ ପଡ଼ି ରହିଥିଲେ । ସେପରି ଶିକ୍ଷା ଓ ସାହିତ୍ୟହୀନ ହୋଇ ପଡ଼ି ରହିଲେ, ଅନ୍ୟ ପ୍ରଦେଶର ଲୋକେ ସବୁଦିନ ପାଇଁ ଏ ରାଜ୍ୟ ଉପରେ ହାକିମି କରି, ଏ ରାଜ୍ୟକୁ ଓ ଜଗନ୍ନାଥ ସଂସ୍କୃତିକୁ ସମୂଳେ ଧ୍ୱଂସ କରିଦେବେ ବୋଲି ହରିହରଙ୍କ ମନରେ ଦୃଢ଼ ଧାରଣା ଜାତ ହୋଇଥିଲା । ତେଣୁ ଏ ରାଜ୍ୟ

Digitized by PPRACHIN, SOA

ଲୋକେ ସଂକୀର୍ଣ୍ଣତା ଛାଡ଼ି ନୂତନ ବୈଜ୍ଞାନିକ ପ୍ରଣାଳୀରେ ଶିକ୍ଷିତ ହୋଇ ଅନ୍ୟ ପ୍ରଦେଶର ଲୋକଙ୍କ ସଙ୍ଗେ ନିଜର ସମାନସ୍କନ୍ଧ ହୋଇ ଦେଶକୁ ଉନ୍ନତି ପଥରେ ଚଳାଇ ନେଇ ପାରିବେ ତାହା ତାଙ୍କର ଏକମାତ୍ର ଚିନ୍ତା ଥିଲା ।

ହରିହର ତାଙ୍କ ଜନ୍ମତିଥି କୁମାର ପୂର୍ଣ୍ଣିମା ଦିନ ୧୮୭୫ ମସିହାରେ ନିଜ ବ୍ୟୟରେ ସଂସ୍କୃତମୂଳକ ଏକ ବିଦ୍ୟାଳୟ ପୁରୀ ସହରରେ ଆରମ୍ଭ କରି ଥିଲେ । ତାହା ଏବର ପୁରୀ ସଂସ୍କୃତ କଲେଜ, ଓଡ଼ିଶା ସଂସ୍କୃତ ପରିଷଦ ବା ଓଡ଼ିଶା ସଂସ୍କୃତ ଆସୋସିଏସନ, ପ୍ରଭୃତିର ମୂଳ ଅନୁଷ୍ଠାନ । ଆରମ୍ଭ ହେବା-ବେଳେ ସେ ବିଦ୍ୟାମନ୍ଦିରଟି ଗୋଟିଏ ସାମାନ୍ୟ ବିଦ୍ୟାଳୟ ରୂପେ ଆରମ୍ଭ ହୋଇଥିଲା । କିନ୍ତୁ ତାହା ପଛରେ ଏକ ବିରାଟ ଯୋଜନା ରହିଥିଲା । ତାହାକୁ ଏକ ବିଶାଳ ପ୍ରାଚ୍ୟ ବିଶ୍ୱବିଦ୍ୟାଳୟରେ ପରିଣତ କରିବା ତାଙ୍କର କଳ୍ପନା ଥିଲା । ସଂସ୍କୃତ ସାହିତ୍ୟ ଓ ଦର୍ଶନ ସଙ୍ଗେ ଇଂରେଜି ତଥା ଲାଟିନ୍, ଗ୍ରୀକ୍, ପରି ଭାଷାମାନଙ୍କ ମାଧ୍ୟମରେ ବୈଜ୍ଞାନିକ ଭାଷାତତ୍ତ୍ୱର ଆଲୋଚନା କରିବା ଓ ତାହିଁ ସଙ୍ଗେ ଭୂଗୋଳ, ଇତିହାସ, ଗଣିତ, ଜ୍ୟୋତିଷ, ଚିକିତ୍ସା ଶାସ୍ତ୍ର, ପ୍ରଭୃତି ଅଧ୍ୟୟନ ଓ ଅଧ୍ୟାପନାର ବ୍ୟବସ୍ଥା କରିବା ସେହି କଳ୍ପନା ଓ ଯୋଜନାର ଅଙ୍ଗୀଭୂତ ଥିଲା । ମାତ୍ର ଅନୁଷ୍ଠାନଟିର ନାମ ସେ ଦେଇଥିଲେ 'ପୁରୀ ସଂସ୍କୃତ ବିଦ୍ୟାଳୟ' ।

## ୨୭ । ଶିକ୍ଷାନୁଷ୍ଠାନ ପାଇଁ ରୋଜଗାର ପନ୍ଥା :

ନିଜର ପାଣ୍ଡିତ୍ୟ ପ୍ରଦର୍ଶନରେ ଦୂର ଦୂରାନ୍ତର ରାଜ ଦରବାରମାନଙ୍କରୁ ବିଦାୟ ସଂଗ୍ରହ କରିବା ତାଙ୍କର ଏକମାତ୍ର ରୋଜଗାରର ପନ୍ଥା ଥିଲା । ସେ-କାଳରେ ଭାରତବର୍ଷର ଇଂରେଜ ଶାସିତ କରଦ ରାଜ୍ୟମାନଙ୍କର ରାଜା ରାଜୁଡ଼ା-ମାନଙ୍କ ମଧ୍ୟରୁ କେତେକ ବିଦ୍ୟାନୁରାଗୀ ରାଜା, ଜମିଦାରଙ୍କର ପଣ୍ଡିତ ସଭାମାନ ରହିଥିଲା । ଭାରତର ବିଭିନ୍ନ ସ୍ଥାନର ବିଦ୍ୱାନ ପଣ୍ଡିତମାନେ ସେହି ଦରବାର-ମାନଙ୍କୁ ଯାଇ ଆଲୋଚନା ମାଧ୍ୟମରେ ନିଜର ପାରଦର୍ଶିତା ଦେଖାଇ ସମ୍ମାନିତ ହେଉଥିଲେ । ଧର୍ମ ପ୍ରଚାର ଓ ଦେଶହିତକର କାର୍ଯ୍ୟ ପାଇଁ ସେମାନେ ସମୟ ସମୟରେ ମୋଟା ଅର୍ଥ ସଂଗ୍ରହ କରି ଫେରୁଥିଲେ ।

Digitized by PPRACHIN, SOA

## ୨୮ । ହରିହରଙ୍କର ବଲରାମପୁର ଗମନ :

ଏବର ଉତ୍ତର ପ୍ରଦେଶର ଉତ୍ତର ପଶ୍ଚିମ କୋଣରେ ସେ କାଳର ପଞ୍ଜାବ ପ୍ରଦେଶକୁ ଲାଗି ବଳରାମପୁର ନାମକ ଏକ କରଦ ରାଜ୍ୟ ରହିଥିଲା । ସେହି ବଳରାମପୁରର ରାଜା ଜଣେ ଧର୍ମଜ୍ଞ, ବିଦ୍ୱାନ ଓ ଶିକ୍ଷାପ୍ରେମୀ ବ୍ୟକ୍ତି ଥିଲେ । ସେ ଜଗନ୍ନାଥ ଦର୍ଶନ ପାଇଁ ଆସି ତାଙ୍କ ପଣ୍ଡାଙ୍କୁ ଜଗନ୍ନାଥଙ୍କର ନିୟମିତ ଭୋଗ ଖଞ୍ଜାଯିବାପାଇଁ କିଛି ଅର୍ଥର ବ୍ୟବସ୍ଥା କରିଥିଲେ । ସେ ନିଜରାଜ୍ୟକୁ ଫେରିଯିବାପରେ ସେ ସମ୍ବାଦ ପଣ୍ଡିତ ହରିହରଙ୍କ କର୍ଣ୍ଣଗୋଚର ହେଲା । ଧର୍ମ କାର୍ଯ୍ୟ ପାଇଁ ତାଙ୍କ ଦାତାପଣ କଥା ଶୁଣି ହରିହରଙ୍କ ମନରେ ଆଶାର ସଞ୍ଚାର ହୋଇଥିଲା ।

ଦୁର୍ଭିକ୍ଷ ମାଡ଼ି ଆସୁଥିବା ସେହି ଅନାଟନ ସମୟରେ ଓଡ଼ିଶାର ପାଖଆଖ ଅଞ୍ଚଳରୁ ତାଙ୍କ ଶିକ୍ଷା ଅନୁଷ୍ଠାନ ପାଇଁ ଅର୍ଥ ପ୍ରାପ୍ତିର ବିଶେଷ ସମ୍ଭାବନା ନଥିଲା । ତେଣୁ ବଳରାମପୁର ରାଜାଙ୍କ କଥାଶୁଣି ନିଜର ଉଦ୍ଦେଶ୍ୟ ସାଧନ ପାଇଁ ସେହି ରାଜ ଦରବାରରେ ଯାଇ ଉପସ୍ଥିତ ହେବା ପାଇଁ ସେ ସ୍ଥିର କଲେ ।

ସେ ରାଜ୍ୟ ଓଡ଼ିଶା ଠାରୁ ବହୁ ଦୂରରେ ଏବଂ ସେଠାକୁ ଯିବାର ବାଟ-ଘାଟ ସବୁ ଦୁର୍ଗମ ଓ ବିପଦ ସଙ୍କୁଳ ଥିଲା । ହରିହର ଯାହା ହିସାବରୁ ଥିଲେ ତାହା କାର୍ଯ୍ୟରେ ପରିଣତ କରିବାର ତାଙ୍କର ଶକ୍ତିଥିଲା । ତେଣୁ ସେ ସବୁ ବାଧାବିଘ୍ନର ଆଶଙ୍କା ହରିହରଙ୍କ ସଙ୍କଳ୍ପକୁ ଅଟକାଇ ପାରି ନ ଥିଲା । ସେ ବଳରାମପୁର ପଣ୍ଡାଙ୍କ ଠାରୁ ବାଟଘାଟର ସମସ୍ତ ବିବରଣ ବିଶଦ ଭାବରେ ବୁଝିନେଇ ବଳରାମ-ପୁର ଉଦ୍ଦେଶ୍ୟରେ ବାହାରି ପଡ଼ିଲେ । ପଦବ୍ରଜରେ ଯାଇ କଲିକତାରେ ପହଞ୍ଚିଲେ । ସେଠାରୁ ଯେଉଁଠି ସାମୟିକ ଭାବେ ଯେଉଁ ଯାନ ବାହାନ ମିଳିଲା ତାର ବ୍ୟବହାର କରି ପ୍ରାୟ ଦୁଇମାସ ପରେ 'ହରିଦ୍ୱାର'ରେ ଉପସ୍ଥିତ ହେଲେ । ହରିଦ୍ୱାରଠାରୁ ପୁଣି ପଦବ୍ରଜରେ ଅତି ଦୁର୍ଗମ ପଥ ଅତିକ୍ରମ କରି ସେ ବଳରାମପୁରରେ ପହଞ୍ଚି ପାରିଥିଲେ ।

## ୨୯ । ବଳରାମପୁର ରାଜଦରବାରରେ ବହୁମାନ ପ୍ରାପ୍ତି :

ବଳରାମପୁର ରାଜା ପ୍ରକୃତରେ ଜଣେ ଯୋଗ୍ୟ ଓ ନମ୍ର ବ୍ୟକ୍ତି ଥିଲେ । ସେ ହରିହରଙ୍କୁ ଦେଖି ଦେଖି ସଂସ୍କୃତରେ 'କଃ ତ୍ୱଂ' ବୋଲି ପଚାରିଲେ । ହରିହର

Digitized by PPRACHIN, SOA

ତତ୍‌କ୍ଷଣାତ୍ 'ପୁରୀପୂର୍ଣ୍ଣି' ବୋଲି ଉତ୍ତର ଦେଲେ, ତା ଅର୍ଥ ରାଜା ପଚାରିଲେ ଘର କେଉଁଠି, ହରିହର ଉତ୍ତର ଦେଲେ ଘର ପୁରୀ । ରାଜା ସେଥିରେ ଖୁସି ହୋଇ ତାଙ୍କର ପୂର୍ଣ୍ଣ ପରିଚୟ ପାଇଁ ସେହିପରି କେତେକ ଗୂଢ଼ାର୍ଥପୂର୍ଣ୍ଣ ପ୍ରଶ୍ନ ପଚାରିଥିଲେ । ହରିହର ସେ ସବୁର ଉତ୍ତର ସଂସ୍କୃତ ଶ୍ଳୋକ ମାଧ୍ୟମରେ ଦେଇଥିଲେ । ସେହି ଶ୍ଳୋକର କେତେକ ଅଂଶ ହେଲା—ମୁଁ ଏପରି ସ୍ଥାନରୁ ଆସିଛି, ଯେଉଁଠି ଆରାଧ୍ୟ ଦେବତାଙ୍କ ପ୍ରିୟା ସ୍ୱୟଂ ଲକ୍ଷ୍ମୀ ଦେବୀ 'ପ୍ରିୟା ଯସ୍ୟ ହରିଃ ପ୍ରିୟା' ଅର୍ଥାତ୍ ସ୍ୱୟଂ ଜଗନ୍ନାଥ । ସେହି ଦେବତା ସମୁଦ୍ର କୂଳରେ ଥାଆନ୍ତି । ସଂସ୍କୃତରେ—'ଦଧି ଯସ୍ୟ ମହୋଦଧି ।'

ଶ୍ଳୋକ ମାଧ୍ୟମରେ ଚତୁରତାର ସହିତ ନିଜ ପରିଚୟ ପ୍ରଦାନରେ ତାଙ୍କ ଘର ପୁରୀ, ତାହା ସମୁଦ୍ର କୂଳରେ ଅବସ୍ଥିତ ଓ ତାଙ୍କର ଆରାଧ୍ୟ ଦେବତା ଜଗନ୍ନାଥ ପ୍ରଭୃତି ଶୁଣି, ଜଗନ୍ନାଥ ଭକ୍ତ ବଳରାମ ପୁର ରାଜା ଭାବବିହ୍ୱଳ ହୋଇ ନିଜ ସିଂହାସନରୁ ଉଠିଆସି ହରିହରଙ୍କୁ ଆଲିଙ୍ଗନ କରି ପକାଇଥିଲେ ।

ହରିହରଙ୍କ ବ୍ୟକ୍ତିତ୍ୱରେ ମୁଗ୍ଧ ହୋଇ ରାଜା ତାଙ୍କୁ ଆଦର ଅଭ୍ୟର୍ଥନା କରି ପୋଗ୍ରେଷ୍ଠି ନେଇ ନିଜ ସଭାର ପଣ୍ଡିତମାନଙ୍କ ସହିତ ପରିଚିତ କରାଇ ଦେଇଥିଲେ । ସେ ପଣ୍ଡିତସଭାର ଆଲୋଚନାରେ ଅଂଶ ଗ୍ରହଣ କରି ହରିହର ନିଜର ଅଗାଧ ପାଣ୍ଡିତ୍ୟ ଓ ବାଗ୍ମିତା ବଳରେ ସଭାସଦ୍‌ମାନଙ୍କୁ ଚମତ୍କୃତ କରି ବାହାବା ପାଇଥିଲେ ।

## ୩୦ । ସ୍କୁଲ ପାଇଁ ଦାନ ଗ୍ରହଣ

ବଳରାମପୁର ରାଜା ହରିହରଙ୍କ ଯାତ୍ରାର ମହତ ଉଦ୍ଦେଶ୍ୟ ଅବଗତ ହେବା ପରେ ସେ କାଳରେ ମଧ୍ୟ ପଣ୍ଡିତ ହରିହରଙ୍କୁ ପାଞ୍ଚହଜାର ପାଞ୍ଚଶତ ଟଙ୍କା ଚନ୍ଦା ଦାନ ସମ୍ମାନିତ କରିଥିଲେ । ହରିହର ସେ ସମସ୍ତ ଟଙ୍କାକୁ ଗଣ୍ଠିଲିରେ ବାନ୍ଧି ବିପଦ ସଂକୁଳ ପଥଦେଇ ସାହସ ସହିତ ଏକାକୀ ଆସି ପ୍ରାୟ ଦୁଇମାସ ପରେ ପୁରୀରେ ପହଞ୍ଚି ପାରିଥିଲେ ।

ବିଦ୍ୟାଳୟ ଗୃହ, ଶିକ୍ଷକମାନଙ୍କ ଦରମା ପ୍ରଭୃତି, ବାବଦରେ ସେ ତାଙ୍କର ସମସ୍ତ ପ୍ରାପ୍ୟ ଅର୍ଥ ଅକୁଣ୍ଠ ଚିତ୍ତରେ ବ୍ୟୟ କରିଥିଲେ ।

Digitized by PPRACHIN, SOA

ହରିହରଙ୍କ ସ୍କୁଲ୍‌ରେ ସାଧାରଣତଃ ସମ୍ବଳହୀନ ଗ୍ରାମ୍ୟ ଛାତ୍ରମାନେ ଆସି ବିଦ୍ୟାଧ୍ୟୟନ କରୁଥିଲେ । ସେମାନଙ୍କ ରହିବାପାଇଁ ଛାତ୍ରାବାସଟିଏ ନଥିଲା । ସହରରେ ରହି ଚଳିବା ପାଇଁ ସେମାନଙ୍କର ଆର୍ଥିକ ସମ୍ବଳ ନଥିଲା । ସେମାନେ ପାଖ ଆଖ ଗ୍ରାମମାନଙ୍କରୁ ପ୍ରତ୍ୟହ ଯିବାଆସିବା କରି ପାଠ ପଢ଼ିବାରେ ନାନା ଅସୁବିଧାର ସମ୍ମୁଖୀନ ହେଉଥିଲେ ।

## ୩୧ । ଛାତ୍ରଙ୍କ ଭରଣପୋଷଣର ବ୍ୟବସ୍ଥା :

ହରିହର ସେ ସମ୍ବନ୍ଧରେ ଚିନ୍ତିତ ଥିବା ସମୟରେ ପୁଣି ବଳରାମପୁର ରାଜାଙ୍କ ଠାରୁ ନିମନ୍ତ୍ରଣ ଆସିଲା । ତାହାକୁ ଏକ ସୁଯୋଗ ମନେକରି ପରବର୍ଷ ପୁଣି ବଳରାମପୁର ଅଭିମୁଖେ ଯାତ୍ରା କଲେ ।

ପୂର୍ବରୁ ପୁରୀ ମନ୍ଦିରରେ ଠାକୁରଙ୍କ ନିକଟରେ ଭୋଗ ଲାଗିବାପାଇଁ ବଳରାମପୁର ରାଜା ତାଙ୍କ ପଣ୍ଡାଙ୍କୁ ବାର୍ଷିକ ତେରଶହ ଟଙ୍କା ଦେଉଥିଲେ । ହରିହର ବଳରାମପୁରରେ ରହିଥିବା ସେହି ଅର୍ଥକୁ ତାଙ୍କ ସ୍କୁଲର ପିଲାଙ୍କ ଖର୍ଚ୍ଚ ପାଇଁ ଖଞ୍ଜିଦେବାକୁ ରାଜାଙ୍କୁ ଅନୁରୋଧ କଲେ । ସେଥିରେ ରାଜା ମଧ୍ୟ ସମ୍ମତ ହୋଇଗଲେ । ସେ କାଳର ଧର୍ମପାଇଁ ଖଞ୍ଜାଯାଇଥିବା ଜଗନ୍ନାଥଙ୍କ ଆଟିକା ଭୋଗକୁ ଏହିପରି ଛାତ୍ରବୃତ୍ତିରେ ପରିଣତ କରିଦେବା କେବଳ ହରିହରଙ୍କ ପରି ଦୂରଦର୍ଶୀ ମନସ୍ୱୀ ତଥା ତାଙ୍କଦ୍ୱାରା ଅନ୍ତରଙ୍ଗ ଭାବରେ ପ୍ରଭାବିତ ରାଜବନ୍ଧୁଙ୍କ ପକ୍ଷରେ ଏକା ସମ୍ଭବ । ପରେ ମଧ୍ୟ ସେହି ସଂସ୍କୃତ ବିଦ୍ୟାଳୟର ଛାତ୍ରମାନେ ସେ ଅର୍ଥ ବୃତ୍ତି ରୂପେ ପାଇଆସୁଥିଲେ । ଓଡ଼ିଶାର ଅତି ଦୁର୍ଦ୍ଦିନରେ ପ୍ରଳୟଙ୍କରୀ ନଅଙ୍କ ଦୁର୍ଭିକ୍ଷର ଦୁଇବର୍ଷ ପୂର୍ବରୁ ସେହି ବିଦ୍ୟାଳୟଟି ଆରମ୍ଭ ହୋଇଥିଲା ।

## ୩୨ । କରାଳ ନଅଙ୍କ ଦୁର୍ଭିକ୍ଷ :

ସେହି ନଅଙ୍କ ଦୁର୍ଭିକ୍ଷ କିପରି ଭୀଷଣ ଆକାର ଧାରଣ କରିଥିଲା ତାହା ଧାରଣା କରିବା ସହଜ ନୁହେଁ । ପୁରୀ ରାଜା ନାବାଳକ ଦିବ୍ୟସିଂହ ଦେବଙ୍କ ନଅଅଙ୍କ ବା ଇଂରେଜି ଅନୁସାରେ ୧୮୬୬ ଖ୍ରୀଷ୍ଟାବ୍ଦରେ ତାହା ଉଠିଥିଲା । ଏହାଥିଲା ଓଡ଼ିଶା ଇତିହାସରେ ଏକ ବଡ଼ ସଙ୍କଟ କାଳ । ଏପରି ଦୁର୍ଭିକ୍ଷ ଏହା ପୂର୍ବରୁ କେବେ ହୋଇଥିବାର ଜଣାନାହିଁ କମ୍ବା ଏହାପରେ ବି ଭାରତରେ କେଉଁଠି ଦେଖାଦେଇ ନାହିଁ ।

Digitized by PPRACHIN, SOA

## ୩୩ । ସରକାରଙ୍କ ନିଷ୍କ୍ରିୟତା :

୧୯୬୬ ଖ୍ରୀଷ୍ଟାବ୍ଦରେ ବର୍ଷା ପ୍ରାପ୍ତ ହେଲା ନାହିଁ । ପୁରୀ,କଟକ, ବାଲେଶ୍ୱର ସର୍ବତ୍ର ଅନାଟନ ହୋଇଗଲା । ଇଂରେଜ ଶାସକ ତ ଥିଲେ ବିଦେଶୀ । ସେମାନେ ତାଙ୍କ ବଙ୍ଗଳା ବା ଅଫିସ୍‌ର ପରଦା ଆଢୁଆଳରେ ସହରମାନଙ୍କର ନିଭୃତ କୋଣରେ ଏକପ୍ରକାର ଆଖି ବୁଜି ବସିରହିଥିଲେ । ପଡ଼ୋଶୀ ରାଜ୍ୟ-ମାନଙ୍କରୁ ଆମଦାନି ହୋଇଥିବା ଦେଶୀ କରାଣୀ ଓ କର୍ମଚାରୀଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭର କରି ସେମାନେ ଦେଶର ଶାସନ ଚଳାଉଥିଲେ । ସେହି କର୍ମଚାରୀମାନେ ଓଡ଼ିଆ-ମାନଙ୍କୁ ନୀଚ ଚକ୍ଷୁରେ ଦେଖୁଥିଲେ, ସେମାନେ ନିଜ ସ୍ୱାର୍ଥ ଛଡ଼ା ଆଉ କିଛି ଦେଖୁନଥିଲେ । ଲୋକଙ୍କ ପ୍ରତି ସେମାନଙ୍କର ସହାନୁଭୂତି ପରିବର୍ତ୍ତେ ଏକ ପ୍ରକାର ବୈରଭାବ ରହିଥିଲା ।

## ୩୪ । ଦେଶୀୟ ଅଫିସରଙ୍କ ବଞ୍ଚକତା :

ସେହି କର୍ମଚାରୀମାନଙ୍କ ଲୋଲୁପ ଦୃଷ୍ଟିରେ କାହା ଖଳାର ଦୁଇଟା ପାଳ-ଗଦା ଦୃଶ୍ୟ ହେଲେ ସେମାନଙ୍କ ଦୃଷ୍ଟି ଝଲସିଯାଉଥିଲା । ତାକୁ ସେ ଧାନ-ଗଦା ବୋଲି ଧରିନେଉଥିଲେ । କିଏ ଟିକିଏ ପଇସାବାଲା ବୋଲି ସେମାନଙ୍କର ଧାରଣା ହେଲେ ତାଙ୍କ ପାଟିରୁ ନାଳ ଗଡ଼ୁଥିଲା । ସେ ନାନା ଫନ୍ଦି ଫିକର କରି ତାକୁ କାଙ୍ଗାଳରେ ପରିଣତ କରି ଦେଉଥିଲେ ।

ଦୁର୍ଭିକ୍ଷ ସମୟରେ ସେମାନେ ସେପରି କୁଟାଗଦାମାନ ଦେଖି ଦେଶଯାକ ପାଳଗଦାରେ ଧାନ ଭର୍ତ୍ତି ହୋଇ ରହିଛି ଏବଂ ତାହା ବର୍ଷକ ଯାଇ ବଳିବ ବୋଲି ଇଂରେଜ ଶାସକମାନଙ୍କ ନିକଟରେ ରିପୋର୍ଟ ପେଶ୍ କଲେ ।

ଆଠ ଦଶ ମାସ କଟିଗଲା । ଲୋକଙ୍କର ଯାହା ଖାଦ୍ୟ ସମ୍ବଳ ଥିଲା ସବୁ ସରିଗଲା । ସେ ବର୍ଷ ପୁରୀ କ୍ଷେତ୍ର ଭୂମିରେ ଠିଆ ହୋଇଛି । ପାଚିନାହିଁ । ଲୋକେ ଖାଇବାକୁ କିଛି ନ ପାଇ ଲକ୍ଷ ଲକ୍ଷ ସଂଖ୍ୟାରେ ମରି ଶୋଇଲେ । ସେତେବେଳର ସରକାରୀ ରିପୋର୍ଟ ହେଉଛି ଓଡ଼ିଶାର ସମୁଦାୟ ଷାଠିଏ ଲକ୍ଷ ଲୋକରୁ ଏକ ତୃତୀୟାଂଶ ବା ୨୦ ଲକ୍ଷ ଲୋକ ଅନାହାରରେ ମରିଥିଲେ । ପ୍ରକୃତରେ ତା'ଠାରୁ ବହୁ ଅଧିକ ଲୋକ ସେଥିରେ ପ୍ରାଣ ହରାଇଥିଲେ ।

Digitized by PPRACHIN, SOA

## ୩୫ । ଦୁର୍ଭିକ୍ଷର କରାଳ ଚିତ୍ର :

ଦୁର୍ଭିକ୍ଷ ଯିବାର ବହୁକାଳ ଯାଏ ଗ୍ରାମ ସବୁ ଫଡା ହୋଇ, ଘରଭିତ୍ତିମାନଙ୍କ ଉପରେ ମଣିଷର ମୁଣ୍ଡ ଓ କଙ୍କାଳ ହାଡ ସବୁ ପଡ଼ିରହିଥିବାର ଦେଖିବାକୁ ମିଳୁଥିଲା । ସେହିପରି ଗୋଟିଏ ଘରଡିହ କୁଦରୁ ଜଣାଯାଏ, ସେହି ଘରେ ୧୮ ଜଣ କୁଟୁମ୍ବ ଥିଲେ । ସେମାନଙ୍କର ୨୦ ଏକର ଅତି ଭଲ ଚାଷଜମି ଥିଲା ; ମାତ୍ର କେତୋଟା ଧାନ ପାଇଁ ସରକାର ବା ଜମିଦାର ଯେ ଘରକୁ ଖାଦ୍ୟ ଯୋଗାଇ ଦେଇଥିଲେ ସେମାନେ ଭଲରେ ରହିଥାଆନ୍ତେ ; କିନ୍ତୁ ସରକାରୀ ଉଦାସୀନତା ଫଳରେ ଠିକ୍ ଫସଲ କାଟିବା ପୂର୍ବରୁ ଘରର ଅଠର ଜଣଯାକ ସମସ୍ତେ ନଅଙ୍କରେ ମରି ଶୋଇଥିଲେ ।

## ୩୬ । ହରିହରଙ୍କ ଜନସେବା :

ସେହି ଦୁର୍ଭିକ୍ଷ କାଳରେ ଯେତେବେଳେ ଭିକ୍ଷା ମିଳିବାର ମଧ୍ୟ କୌଣସି ସମ୍ଭାବନା ନଥିଲା, ସେହି କରାଳ ଅକାଳରେ ମଧ୍ୟ ହରିହର ତାଙ୍କ ଶିକ୍ଷା ଅନୁଷ୍ଠାନରେ ସମସ୍ତ ଛାତ୍ରଙ୍କୁ ଖାଇବା, ପିନ୍ଧିବା ଯୋଗାଇ ପୁରୀରେ ବରାବର ରଖାଇ ସ୍କୁଲଟିକୁ ଜୀବନ୍ତ ରଖିଥିଲେ ।

କେବଳ ଶିକ୍ଷା ଅନୁଷ୍ଠାନଟିକୁ ଦୁର୍ଭିକ୍ଷ ହାତରୁ ରକ୍ଷାକରି ହରିହର ନିଶ୍ଚିନ୍ତ ନଥିଲେ । ଲୋକଙ୍କର ମରଣ ଯନ୍ତ୍ରଣାର ଆର୍ତ୍ତନାଦ, ବିଦେଶୀ ଇଂରେଜ ସରକାର ଓ ଅତ୍ୟାଚାରୀ ପଡ଼ୋଶୀ ରାଜ କର୍ମଚାରୀ ଓ ଜମିଦାରଙ୍କ କର୍ଣ୍ଣପଟଳ ଭେଦ କରି ନ ପାରିବା ହରିହରଙ୍କ ପ୍ରାଣକୁ ଅତ୍ୟନ୍ତ ବାଧୁଥିଲା । ଚାରିଆଡ଼େ କଙ୍କାଳର ଶୋଭାଯାତ୍ରା ଚାଲିଥିବା ସଙ୍ଗେ ସଙ୍ଗେ ଦାଣ୍ଡରେ ଘାଟରେ ସବୁ ସ୍ଥାନରେ ଲୋକେ ପୋକମାଛି ପରି ମରି ପଡ଼ୁଥିଲେ । ସେତେବେଳେ ମଧ୍ୟ ରକ୍ଷଣ-ଶୀଳ କୁସଂସ୍କାରୀମାନଙ୍କ ମନରେ ଦୟାର ସଂଚାର ହୋଇନଥିଲା । କୌଣସି କୌଣସି ସ୍ଥାନରେ ଖ୍ରୀଷ୍ଟିଆନ୍ ପାଦ୍ରୀମାନେ ଅନ୍ନଛତ୍ରର ବ୍ୟବସ୍ଥା କରି ଭାତ ବାଣ୍ଟୁଥିଲେ । ସେ ଭାତ ଖାଇଲେ ଜାତି ଯିବ ବୋଲି ରକ୍ଷଣଶୀଳମାନେ ଲୋକଙ୍କ ମନରେ ଭୟର ସଂଚାର କରାଉଥିଲେ । ଯେ ପ୍ରାଣ ବିକଳରେ ଯାଇ ସେ ଅନ୍ନଛତ୍ରରେ ଖାଇ ପ୍ରାଣରକ୍ଷା କଲେ, ସେମାନଙ୍କୁ ରକ୍ଷଣଶୀଳ ସମାଜପତିମାନେ ଜାତିଗଲା ବୋଲି କହି ଖ୍ରୀଷ୍ଟିଆନ୍ ଧର୍ମ ନିକଟକୁ ଜବରଦସ୍ତି ଠେଲିଦେବାକୁ ମଧ୍ୟ

Digitized by PPRACHIN, SOA

ପଶ୍ଚାତ୍‌ପଦ ହେଉଥିଲେ । ସେଥିଯୋଗୁ ଏକ ପ୍ୟାଡ଼ି ଖ୍ରୀଷ୍ଟିଆନ୍ (ଧାନଗୁଣ୍ଡଳ ଖ୍ରୀଷ୍ଟିଆନ୍) ଶ୍ରେଣୀର ସୃଷ୍ଟି ହୋଇଥିଲା ।

## ୩୭ । ସମ୍ପୂର୍ଣ୍ଣ ଘରପୋଡ଼ି ପରେ ଦମକଳ :

ପଣ୍ଡିତ ହରିହର ତାଙ୍କ ଗୁରୁମାନଙ୍କୁ ନେଇ ସାଧ୍ୟମତେ ଦୁସ୍ଥଜନଙ୍କ ସେବା କରୁଥିଲେ । ଜନସେବାରେ ବ୍ରତୀ ହେବା ସଙ୍ଗେ ସଙ୍ଗେ ସେ ଯଥାସାଧ୍ୟ ଆନ୍ଦୋଳନ ଚଳାଇ କର୍ତ୍ତୃପକ୍ଷଙ୍କ ଦୃଷ୍ଟି ଆକର୍ଷଣ କରୁଥିଲେ । କର୍ମବୀର ଗୌରୀଶଙ୍କରଙ୍କ ଦ୍ୱାରା ପ୍ରକାଶିତ 'ଉତ୍କଳ ଦୀପିକା' ପତ୍ରିକାରେ ଲୋକଙ୍କ ଦୁର୍ଦ୍ଦଶା ବର୍ଣ୍ଣନା କରି ଲେଖାମାନ ପ୍ରକାଶ କରୁଥିଲେ ।

'ଉତ୍କଳ ଦୀପିକା' ମାଧ୍ୟମରେ ଗୌରୀଶଙ୍କର ଆବେଦନତା ବିଚକ୍ଷାନନ୍ଦ ଓ ପଣ୍ଡିତ ହରିହରଙ୍କ ପରି ଜନ୍ମପୂତ ମହାମନାଙ୍କ ଆକୁଳ ପ୍ରାର୍ଥନା ପରେ ଇଂରେଜ ସରକାର ସକ୍ରିୟ ହୋଇ ରେଙ୍ଗୁନରୁ ଚାଉଳ ଅଣାଇବାର ବ୍ୟବସ୍ଥା କଲେ । ସରକାରଙ୍କ ଆଳସ୍ୟକତା ଅଭାବରୁ ଓ ବ୍ୟବସାୟୀଙ୍କ ଚଞ୍ଚଳତାରୁ ସେ ଚାଉଳ ଆସି ଓଡ଼ିଶାରେ ପହଞ୍ଚିବାରେ ଅତ୍ୟଧିକ ବିଳମ୍ବ ଘଟିଲା । ଘରପୋଡ଼ି ବେଳେ ଖବରଦେଇ ଘର ସମ୍ପୂର୍ଣ୍ଣ ରୂପେ ପୋଡ଼ି ନିଆଁ ଲିଭିଲା ପରେ ଦମକଳ ଆସି ପହଞ୍ଚିଲା ପରି, ସେ ଚାଉଳ ଆସି ପହଞ୍ଚିଥିଲା ; କିନ୍ତୁ ତାହା ଦୁଃସ୍ଥ ଲୋକଙ୍କ କାର୍ଯ୍ୟରେ ଲାଗିପାରିଲା ନାହିଁ ।

ସେତେବେଳକୁ ଅର୍ଦ୍ଧକଙ୍କାଳମାନେ ଯେ ପାରିଲେ, ରାଜ୍ୟ ଛାଡ଼ି ଇତସ୍ତତଃ ହୋଇ ଅନ୍ୟ ରାଜ୍ୟମାନଙ୍କୁ ପଳାଇ ଯାଇଥିଲେ । କୌଣସିମତେ ଦୂର ସ୍ଥାନରେ ଯାଇ ପହଞ୍ଚିଥିଲେ ମଧ୍ୟ ସେମାନଙ୍କ ଆଶା ପୂରଣ ହେଲାନାହିଁ । "ପଳାଇ ପଶିଲି ମାଉସୀ ଘର, ମାଉସୀ ମାରିଲା ଦୁଇ ପ୍ରହାର ।" ନ୍ୟାୟ ଯୋଗୁ ସାହା ଭରଷାହୀନ ହୋଇ, ଅଧିକାଂଶ ଖାଦ୍ୟ ନ ପାଇ ବା ଅଖାଦ୍ୟ ଖାଇ ମରି ଶୋଇଥିଲେ ।

## ୩୮ । ପଣ୍ଡିତ ହରିହରଙ୍କ ଧାରଣା :

ରାଜ୍ୟରେ ଉପଯୁକ୍ତ ଶିକ୍ଷାର ଅଭାବରୁ ଏପରି ହୃଦୟବିଦାରକ ଘଟଣା ସବୁ ଘଟିଗଲା ବୋଲି ହରିହରଙ୍କ ମନରେ ଦୃଢ଼ ଧାରଣା ଜାତ ହୋଇଥିଲା । ଓଡ଼ିଶାରେ ଆଗରୁ ଶିକ୍ଷାର ପ୍ରସାର ଘଟି ଲୋକେ ସଚେତନ ହୋଇଥିଲେ ନଅଙ୍କ ମଡ଼କ ପରି ଏକ ବଡ଼ ବିପଦକୁ ଏଡ଼ାଇ ଦିଆଯାଇ ପାରିଥାଆନ୍ତା ଓ ତତ୍କାଳୀନ

Digitized by PPRACHIN, SOA

ଓଡ଼ିଶାର କମିଶନର ରେଭେନ୍‌ସା ସାହେବଙ୍କ ଦପ୍ତରଠାରୁ ଇଂଲଣ୍ଡର ପାର୍ଲିଆମେଣ୍ଟ ପର୍ଯ୍ୟନ୍ତ ହୁଲସ୍ଥୁଲ ପକାଇ ଦିଆଯାଇ ପାରିଥାଆନ୍ତା ବୋଲି ସେ ଭାବୁଥିଲେ । ତେଣୁ ଓଡ଼ିଶାରେ ଜନଶିକ୍ଷାକୁ ଉନ୍ନତ କରାଇବାପାଇଁ ସେ ତାଙ୍କର ପୂର୍ବ କଳ୍ପିତ ଶିକ୍ଷା ଯୋଜନାକୁ ରୂପ ଦେବାପାଇଁ ତତ୍ପର ହୋଇ ଉଠିଥିଲେ । ତାଙ୍କର କଳ୍ପିତ ପ୍ରାଚ୍ୟ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାପାଇଁ ଓଡ଼ିଶା ବାହାରକୁ ବିଶେଷରେ ଉତ୍ତର ଭାରତକୁ ଅର୍ଥ ସଂଗ୍ରହ କରିବା ପାଇଁ ଯିବାକୁ ସ୍ଥିର କଲେ ।

## ୩୯ । ବିଶ୍ୱବିଦ୍ୟାଳୟ ପାଇଁ ଆବେଦନ ପତ୍ର :

ସେପରି ଯାତ୍ରା ପୂର୍ବରୁ ସେ ରାଜ୍ୟର ପ୍ରଧାନ ପ୍ରଧାନ ଲୋକଙ୍କର ଦସ୍ତଖତରେ ଆବେଦନପତ୍ର ସବୁ ପ୍ରସ୍ତୁତ କଲେ । ତାହାସହିତ ପୁରୀର ପ୍ରସ୍ତାବିତ ବୃହତ୍ ଶିକ୍ଷା ଅନୁଷ୍ଠାନ ପ୍ରତିଷ୍ଠା ପାଇଁ, ଶିକ୍ଷାବିତ୍ ବମଲି ସାହେବ, ବିମ୍‌ସ ଓ ଗେଡ଼ିସ୍ ସାହେବ ପ୍ରଭୃତିଙ୍କ ସ୍ୱତନ୍ତ୍ର ସୁପାରିସ୍‌ପତ୍ରମାନ ସଙ୍ଗରେ ନେଇ ଅଠର ଶହ ଅଣସ୍ତରି ବା ସତୁରି ମସିହାରେ ଉତ୍ତର ଭାରତ ଭ୍ରମଣରେ ବାହାରି ପଡ଼ିଥିଲେ । ଅନ୍ତତଃ ଏକ ଲକ୍ଷ ଟଙ୍କା ହେଲେ ସେହି ଅନୁଷ୍ଠାନଟି ଆରମ୍ଭ କରାଯାଇ ପାରିବ ବୋଲି ଓଡ଼ିଆ, ଇଂରେଜୀ, ବଙ୍ଗଳା ଓ ହିନ୍ଦୀରେ ଛପା ସେହି ଆବେଦନ ପତ୍ରମାନଙ୍କରେ ଲେଖାଥିଲା ।

ପୁରୀ କଲେଜ ପାଇଁ ଆବେଦନ ପତ୍ର ସବୁ ନେଇ ଦୁର୍ଗମ ପଥ ପାର ହୋଇ ହରିହର ଯାତ୍ରା କରୁଥିଲେ । ସେପରି ବିଦେଶ ଯାତ୍ରାରେ ବଡ଼ ବଡ଼ ସହରମାନଙ୍କରେ ଲୋକଙ୍କୁ ଆକର୍ଷିତ କରିବାପାଇଁ ସେ ସେଠାର ଗୁଣିମାନଙ୍କୁ ଧରି ଶାସ୍ତ୍ର ଆଲୋଚନା ସଭାର ଆୟୋଜନ କରୁଥିଲେ । ସେପରି ସଭାମାନଙ୍କରେ ନାନା ଜଟିଳ ଶାସ୍ତ୍ରମାନଙ୍କ ସମ୍ବନ୍ଧରେ ସୁଦୀର୍ଘ ସରଳ ଭାଷଣମାନ ଦେଇ ଲୋକଙ୍କୁ ଅଭିଭୂତ କରୁଥିଲେ । ତାହାଦ୍ୱାରା ଜନତାଙ୍କ ସହିତ ସମ୍ପର୍କସ୍ଥାପନ କରି ନିଜର ଆବେଦନ ପତ୍ରର ପ୍ରଚାର କରି ପାରୁଥିଲେ ।

## ୪୦ । କଲିକତା ଶାସ୍ତ୍ର ଆଲୋଚନା ସଭା :

୧୮୭୨ ମସିହାରେ କଲିକତାର ବେଥୁନ କଲେଜରେ ହରିହର ସେହିପରି ଏକ ବକ୍ତୃତା ଏକାଦିକ୍ରମେ ଘଣ୍ଟାଏ କାଳ ପ୍ରଦାନ କରି ଅତ୍ୟନ୍ତ ପ୍ରଶଂସାର ପାତ୍ର ହୋଇଥିଲେ । ସେ ସଭାରେ ନ୍ୟାୟଶାସ୍ତ୍ରର ଅତି ଜଟିଳ ବିଷୟରେ ସେହି

Digitized by PPRACHIN, SOA

ଘର୍ଘ, ସରଳ ବ୍ୟାଖ୍ୟାର ବକ୍ତୃତା ଯୋଗୁ ସେ ବଡ଼ ଆଦର ଓ ବହୁ ମାନ ସମ୍ମାନ ପାଇଥିଲେ ।

ସେ ସେହି ବକ୍ତୃତା, ପ୍ରଧାନତଃ 'କୁସୁମାଞ୍ଜଳି' ନାମକ ଗ୍ରନ୍ଥର ବିଷୟ-ବସ୍ତୁକୁ ନେଇ ଦେଇଥିଲେ । ସେ ପ୍ରଥମେ ଦୁଇଘଣ୍ଟାକାଳ ସରଳ ସଂସ୍କୃତରେ କହିସାରି, ତା'ପରେ ବଙ୍ଗଳାରେ କହିବାପାଇଁ ବିନୟ ପ୍ରକାଶ କରି ବଙ୍ଗଳାରେ ନ କହି ପୁଣି ଦୁଇଘଣ୍ଟାକାଳ ହିନ୍ଦୀରେ ଭାଷଣ ଦେଇ ପୂର୍ବରୁ ସଂସ୍କୃତରେ କହିଥିବା ବିଷୟଗୁଡ଼ିକ ବୁଝାଇଥିଲେ ।

ସେହି ସଭାରେ 'ଶୋଭା ବଜାର'ର ରାଜା, ବୋଧହୁଏ କାଳୀ କୃଷ୍ଣଦେବ ସଭାପତିତ୍ୱ କରିଥିଲେ । ସେ କାଳର ବିଖ୍ୟାତ ପଣ୍ଡିତ କୃଷ୍ଣ କମଳ ଭଟ୍ଟାଚାର୍ଯ୍ୟ ଓ ତାରାନାଥ ତର୍କ ବାଚସ୍ପତି ସେ ସଭା ଆରମ୍ଭରେ ହରିହରଙ୍କ ପରିଚୟ ପ୍ରଦାନ ଓ ସଭାର ଶେଷରେ ସାଧୁବାଦ ଅର୍ପଣ କରିଥିଲେ ।

## ୪୧ । ପଣ୍ଡିତ ହରିହରଙ୍କ ସମ୍ବନ୍ଧରେ ସମ୍ବାଦ ପ୍ରକାଶ :

କଲିକତାର ତତ୍କାଳୀନ ଇଂରେଜୀ ସାପ୍ତାହିକ 'ହିନ୍ଦୁ ପେଟ୍ରିଅଟ'ରେ ସେ ସଭାର ବିବରଣୀ ସହିତ ହରିହରଙ୍କ ଅଦ୍ୱିତୀୟ କୃତିତ୍ୱର ବିବରଣୀ ମଧ୍ୟ ପ୍ରକାଶିତ ହୋଇଥିଲା ।

ନବ ପ୍ରକାଶିତ 'ଅମୃତବଜାର ପତ୍ରିକା' ପରି ଅନ୍ୟ କେତେକ ଖବର-କାଗଜ ମଧ୍ୟ ତାହା ପ୍ରକାଶିତ କରିଥିଲେ । ହରିହରଙ୍କର ପାଣ୍ଡିତ୍ୟପୂର୍ଣ୍ଣ ଭାଷଣ ସମଗ୍ର କଲିକତାରେ ଗୁଞ୍ଜନ ଖେଳାଇ ଦେଇଥିଲା ।

ସେ କାଳରେ ଓଡ଼ିଶାରେ ନୂଆ ହୋଇ ଗୋଟିଏ ଦୁଇଟି ସାପ୍ତାହିକ ଓଡ଼ିଆ ସମ୍ବାଦପତ୍ର ମୁଣ୍ଡ ଟେକୁଥିଲା । ସେଥିରୁ 'ଉତ୍କଳଦୀପିକା' ନାମକ ସମ୍ବାଦ ପତ୍ରରେ 'ପଣ୍ଡିତ ହରିହର ଦାସ' ଶୀର୍ଷନାମାରେ ୧ । ୭ । ୧୮୭୨ ରେ ପ୍ରକାଶ ପାଇଥିଲା ।

ହରିହର ଦାସଙ୍କ ପ୍ରଶଂସା କଲିକତାର ଅମୃତ ବଜାର ପତ୍ରିକାରୁ ପାଠ କରି ଆନନ୍ଦିତ ହେଲୁ । ଉକ୍ତ ପତ୍ରିକା ଲେଖିଛନ୍ତି ଯେ, "ପଣ୍ଡିତ ହରିହର ଦାସ ସଂସ୍କୃତ ଭାଷାରେ ଅତି ବ୍ୟୁତ୍ପନ୍ନ ଅଟନ୍ତି ; କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ସେ ଉତ୍ତମ

Digitized by PPRACHIN, SOA

ଗ୍ରୀକ୍ ମଧ୍ୟ ଜାଣନ୍ତି ଓ 'ହୋମର'ର କବିତା ସରଳ ସଂସ୍କୃତରେ ଅନୁବାଦ କରିପାରନ୍ତି ।"

## ୪୨ । ହରିହରଙ୍କ ପାଣ୍ଡିତ୍ୟର ପ୍ରଶସ୍ତି :

ହରିହରଙ୍କ ପାଣ୍ଡିତ୍ୟ ସମ୍ବନ୍ଧରେ କଲିକତାର ତତ୍କାଳୀନ ବଙ୍ଗ ପଣ୍ଡିତମାନଙ୍କର କି ମତ ଥିଲା ତାହା ନିମ୍ନଲିଖିତ ଘଟଣାରୁ ଜଣାପଡ଼ିବ । ଏହି ଘଟଣାଟି ପଣ୍ଡିତ ହରିହରଙ୍କ ସଙ୍ଗେ କଲିକତା ସଭାରେ ଉପସ୍ଥିତ ଥିବା ହରିହରଙ୍କ ଶିଷ୍ୟ ସିଦ୍ଧେଶ୍ୱର ମିଶ୍ର ପ୍ରକାଶ କରିଥିଲେ ।

ସ୍ଥାନୀୟ ପଣ୍ଡିତମାନଙ୍କ ଭିତରେ ସର୍ବଦା ବିରୋଧଭାବ ରହିଥାଏ । କୃଷ୍ଣକମଳ ଭଟ୍ଟାଚାର୍ଯ୍ୟ ବଡ଼ ପ୍ରତିଭାଶାଳୀ ପଣ୍ଡିତ ଥିଲେ ; କିନ୍ତୁ ସେ ତାରାନାଥ ତର୍କ ବାଚସ୍ପତିଙ୍କ ପରି ତାଙ୍କ ସମାସ୍କନ୍ଧ ପଣ୍ଡିତଙ୍କୁ ନିମ୍ନ ଚକ୍ଷୁରେ ଦେଖୁଥିଲେ । ତାରାନାଥ 'ବାଚସ୍ପତି-ଅଭିଧାନ' ପରି ଏକ ମୂଲ୍ୟବାନ ଗ୍ରନ୍ଥର ପ୍ରଣେତା ଥିଲେ ଓ ନିଜ ଟୀକା ଓ ମୁଖବନ୍ଧ ସହିତ ସଂସ୍କୃତ ଗ୍ରନ୍ଥମାନ ପ୍ରକାଶ କରି ଖ୍ୟାତି ଅର୍ଜନ କରିଥିଲେ ।

ହରିହର କୁସୁମାଞ୍ଜଳି ଗ୍ରନ୍ଥ ଉପରେ ବକ୍ତୃତା ଦେବା ପୂର୍ବରୁ ଗ୍ରନ୍ଥଟିର ସନ୍ଦେହ ସ୍ଥଳମାନ ବୁଝିବାପାଇଁ ତାରାନାଥଙ୍କ ନିକଟକୁ ଯାଉଥିଲେ । କୃଷ୍ଣକମଳ ହରିହରଙ୍କୁ ଏକ ମହାନ୍ ପଣ୍ଡିତର ସମ୍ମାନ ଦେଉଥିଲେ । ସେ ତାରାନାଥଙ୍କ ନିକଟକୁ ବୁଝିବାକୁ ଯାଉଥିବା କଥା ଶୁଣିବାମାତ୍ରେ ମର୍ମାହତ ହୋଇ ତାରାନାଥଙ୍କୁ ଲକ୍ଷ୍ୟକରି କହିଥିଲେ—"ଶାଲର ବେଣ୍ଟ ଶାଲ୍ ବେଚେ, ସେ ଆବାର ହରିହରକେ କୁସୁମାଞ୍ଜଳି ପଡ଼ାବେ ?" ଅର୍ଥାତ୍ ଶଳାପୁଅ ଶାଲ ବିକ୍ରୀ କରେ, ସେ ପୁଣି ହରିହର ଭଳି ପଣ୍ଡିତଙ୍କୁ କୁସୁମାଞ୍ଜଳି ପଢ଼ାଇବ ? କଥା ହେଉଛି, ତାରାନାଥ ବଡ଼ ପଣ୍ଡିତ ହୋଇ ସେକାଳ ରୀତି ଅନୁସାରେ ରାଜା ଜମିଦାରଙ୍କଠାରୁ ବିଦାୟ ସଙ୍ଗେ ସମ୍ମାନ ସହିତ ଉଲ୍ଲେଖ ଗୁଦର ବା ଶାଲ୍ ସବୁ ଉପହାର ପାଉଥିଲେ । ସେ ଶାଲଗୁଡ଼ାକ ବେଶୀ ହେବାରୁ ସେଗୁଡ଼ାକ ବିକି ଦେଉଥିଲେ । ଅଭାବରୁ ସେ ତାହା ବିକୁଛନ୍ତି ବୋଲି ତାଚ୍ଛଲ୍ୟ କରି ସେ କଥାକୁ ଦେଖାଇ କୃଷ୍ଣକମଳ ସେପରି କହିଥିଲେ । ସେ ଯାହାହେଉ କୃଷ୍ଣକମଳଙ୍କ ପରି ସେ କାଳର ପ୍ରସିଦ୍ଧ ବଙ୍ଗୀୟ ପଣ୍ଡିତ ମଧ୍ୟ ଓଡ଼ିଆ ଯୁବକ ହରିହରଙ୍କ ପ୍ରତିଭାକୁ କେତେ ଉଚ୍ଚସ୍ଥାନ ଦେଉଥିଲେ ତାହା ଏଥିରୁ ସ୍ପଷ୍ଟ ହେଉଛି ।

Digitized by PPRACHIN, SOA

## ୪୩ । ସ୍ୱାମୀ ଦୟାନନ୍ଦ ଓ ହରିହର :

ହରିହରଙ୍କ ପାଣ୍ଡିତ୍ୟ ଓ ବାଗ୍ମୀତାର ଏପରି ପ୍ରଚାର ହୋଇଥିଲା ଯେ, ବଙ୍ଗ ଓ ଭାରତର ଅନ୍ୟାନ୍ୟ ସ୍ଥାନରେ କଠିନ ବିଷୟମାନ ଧରି ବକ୍ତୃତା ଦେବାକୁ ହରିହରଙ୍କୁ ବିଦ୍ୟାନୁରାଗୀମାନେ ସାଦରେ ନିମନ୍ତ୍ରଣ କରୁଥିଲେ । ବଡ ବଡ ବିଦ୍ୱାନମାନେ ତାଙ୍କ ସଙ୍ଗେ ବିଦ୍ୟାଚର୍ଚ୍ଚା କରିବା ପାଇଁ ଆଗ୍ରହ ପ୍ରକାଶ କରୁଥିଲେ ।

ସେହିଥର ହରିହର ଉତ୍ତର ଭାରତରୁ ଫେରିଆସି କଲିକତାରେ ଆର୍ଯ୍ୟ ସମାଜର ପ୍ରତିଷ୍ଠାତା ସ୍ୱାମୀ ଦୟାନନ୍ଦ ସରସ୍ୱତୀଙ୍କ ସହିତ ତାଙ୍କର ସାକ୍ଷାତ୍ ହୋଇଥିଲା । ସ୍ୱାମୀ ଦୟାନନ୍ଦ ସାକାର ଉପାସନାର ଅର୍ଥାତ୍ ପ୍ରତିମା ପୂଜାର ବିରୋଧୀ ଥିଲେ । ହରିହରଙ୍କ ମତ ଭିନ୍ନ ଥିଲା ।

ହରିହର ସାକାର ଉପାସନା ସପକ୍ଷରେ ଯୁକ୍ତି ଦର୍ଶାଇ ଦୟାନନ୍ଦଙ୍କ ସହିତ ଆଲୋଚନା କରିବାପାଇଁ ଗୋଟିଏ ଦିନ ସ୍ଥିର ହେଲା । ଶୋଭାବଜାରର ରାଜା ପ୍ରମୁଖ ବିଶିଷ୍ଟ ବ୍ୟକ୍ତିମାନେ ହରିହରଙ୍କର ପୋଷକତା କରି କଲିକତାରେ ଗୋଟିଏ ସଭାର ଆୟୋଜନ କଲେ । ଆଲୋଚନା ଶୁଣିବାକୁ ସଭାସ୍ଥଳୀରେ ସପକ୍ଷ ଓ ବିପକ୍ଷବାଦୀ ବହୁ ବିଦ୍ୱାନ ବ୍ୟକ୍ତି ସେଠାରେ ରୁଣ୍ଡ ହୋଇଥିଲେ ।

ଦୟାନନ୍ଦ ଓ ହରିହରଙ୍କ ଭିତରେ ଦୁଇଘଣ୍ଟାରୁ ଅଧିକ କାଳ ବାକ୍ୟୁଦ୍ଧ ଲାଗିବା ପରେ ଗୁଣଗ୍ରାହୀ କର୍ମବୀର, ଯୁବକ ହରିହରଙ୍କ ପିଠିରେ ହାତ ମାରି କହିଥିଲେ— "ବାପା, ତୁମର ଯୁକ୍ତିଶକ୍ତି ଓ ବାଗ୍ମୀତାରେ ମୁଁ ସନ୍ତୋଷ ହେଲି । ତୁମର ସତ୍ ଉଦ୍ଦେଶ୍ୟ କଥା ମୁଁ ଶୁଣିଛି । ଆରବର୍ଷ ତୁମେ ରାଜପୁତାନାକୁ ଆସ । ଦଶଲକ୍ଷ ଟଙ୍କା ସହଜରେ ମିଳିଯିବ । ମୁଁ କରାଇ ଦେବି । ତୁମେ ଯେଉଁ ବିରାଟ ବିଦ୍ୟାମନ୍ଦିରଟିର କଳ୍ପନା କରିଛ ତାହା ହୋଇଯିବ ।"

ଦୟାନନ୍ଦଙ୍କ ପରି ସେକାଳର ବିଖ୍ୟାତ ମତିବାନ ପଣ୍ଡିତ ହରିହରଙ୍କ ପରି ଜଣେ ଯୁବକଙ୍କର ପ୍ରତିଭାରେ ମୁଗ୍ଧ ହୋଇ ତାଙ୍କ ସତ୍ ଉଦ୍ଦେଶ୍ୟ ସାଧନ ପାଇଁ ସାହାଯ୍ୟ କରିବାକୁ ପ୍ରତିଶ୍ରୁତି ଦେବା କିଛି କମ୍ କଥା ନୁହେଁ ।

Digitized by PPRACHIN, SOA

## ୪୪ । ପରକର୍ମ ବା ଦେଶସେବା ହିଁ ଜୀବନ :

ହରିହର ସେପରି ପ୍ରତିଶ୍ରୁତି ପାଇ ଆନନ୍ଦ ମନରେ ପୁଣି ପ୍ରତ୍ୟାବର୍ତ୍ତନ କରିଥିଲେ । ହରିହର ବିବାହିତ ଥିଲେ ମଧ୍ୟ ଏକପ୍ରକାର ସଂସାରବୈରାଗୀ ଜୀବନ ଯାପନ କରୁଥିଲେ । ସାମୟିକ ଅର୍ଥ ଯୋଗାଇବା ଛଡ଼ା ନିଜ ଘର ସହିତ ତାଙ୍କର ବିଶେଷ ସମ୍ପର୍କ ନ ଥିଲା । ସେ ପୁରୀରେ ରହି ନିଜର ଆଦର୍ଶ ପାଇଁ ସର୍ବଦା କର୍ମରେ ଲିପ୍ତ ରହୁଥିଲେ ।

ପୂର୍ବରୁ ବୋଧହୁଏ ୧୮୭୦ ମସିହାରେ ଦ୍ୱିତୀୟ ଥର ଉତ୍ତର ଭାରତ ଭ୍ରମଣରେ ବାହାରିଥିବାବେଳେ ମାତାଙ୍କର ଅସୁସ୍ଥତା ଖବର ପାଇ ନିଜ ଗ୍ରାମକୁ ଯାଇଥିଲେ ।

ସେତେବେଳକୁ ତାଙ୍କ ଜନନୀ ମୃତ୍ୟୁଶଯ୍ୟାରେ । ସେ ତାଙ୍କ ବିଧବା ଜନନୀଙ୍କର ଏକମାତ୍ର ସନ୍ତାନ ଥିଲେ । ମାତାଙ୍କ ନିକଟରେ ପୁତ୍ରଙ୍କୁ ଦେଖି ଅନ୍ୟ-ମାନେ କହିଲେ—"ମାଆଙ୍କ ଅବସ୍ଥା ତ ଏପରି ଦେଖୁଛ । ତୁମେ ତ ବିଦେଶ ପଥରେ ବାହାରିଲଣି; ତୁମେ ଗଲେ ମାଆଙ୍କ ମୁଖାଗ୍ନି ଦେବ କିଏ ?" ହରିହର ସେ ଦୁଃଖରେ ମଧ୍ୟ ରହସ୍ୟ କଲପରି କହିଲେ—"ସେ ମରିତ ଜନ୍ମ କରିଛି । ତା ମୁହଁରେ ନିଆଁ ଦେବାକୁ ମୋ ହାତ ଯିବ ନାହିଁ । ତମେମାନେ ସେ କାର୍ଯ୍ୟ କରିଦେବ ।" ସେ କଥା ଶୁଣି ଅନ୍ୟମାନେ ହରିହରଙ୍କ ପ୍ରତିଜ୍ଞାକୁ ଟଳାଇ ହେବ ନାହିଁ ଜାଣି ନୀରବ ରହିଲେ ।

ହରିହରଙ୍କର ପରକର୍ମ ହିଁ ଜୀବନ, ଦେଶର ଉନ୍ନତି ବା ଶିକ୍ଷାପ୍ରସାରର ଚିନ୍ତା ଛଡ଼ା ଅନ୍ୟ ଚିନ୍ତା ତାଙ୍କର ନଥିଲା । ଏପରିକି ତାଙ୍କ ଯୁବତୀ ପତ୍ନୀ ମଧ୍ୟ ତାଙ୍କ ସ୍ୱାମୀଙ୍କୁ ସ୍ୱାମୀ ବୋଲି ଜାଣିଥିଲେ କି ନାହିଁ ସନ୍ଦେହ । ସେ ସନ୍ନ୍ୟାସୀ ଜୀବନ ଯାପନ କରି ଦେଶ ସେବାରେ ଅନବରତ ଲାଗି ରହିଥିବା ତାଙ୍କ ପାଖରେ ଥିବା ଆତ୍ମୀୟ ଅନ୍ତରଙ୍ଗମାନଙ୍କର ସମ୍ପୂର୍ଣ୍ଣ ଧାରଣା ଥିଲା ।

## ୪୫ । ଶେଷଯାତ୍ରା :

ସ୍ୱାମୀ ଦୟାନନ୍ଦ ରାଜସ୍ଥାନର ତାଙ୍କ ଆଜମିର୍ ଆଶ୍ରମରେ ଅବସ୍ଥାନ କରୁଥିବାର ଖବର ପାଇ ୧୮୭୩ (ଅଠର ଶହ ତେସ୍ତରି) ଶେଷ ଭାଗରେ ହରିହର

Digitized by PPRACHIN, SOA

ଦୟାନନ୍ଦଙ୍କ ନିକଟକୁ ଯିବା ପାଇଁ ବାହାରି ପଡ଼ିଲେ । ପୁରୀରୁ ପଦବ୍ରଜରେ ଯାଇ ସେ କଣ୍ଟୁଦିନ ପରେ କଲିକତାରେ ପହଞ୍ଚିଲେ । ସେଠାରୁ ଉତ୍ତର ଦିଗକୁ ଯିବା ପାଇଁ ସେ ସ୍ଥିର କରିଥିଲେ ।

ଯେତେବେଳେ ସମଗ୍ର ଇଂରେଜ ଶାସିତ ଭାରତ ଖଣ୍ଡରେ ଓଡ଼ିଆ ଜାତି ସମ୍ପୂର୍ଣ୍ଣରୂପେ ଅବହେଳିତ ଓ ପଡ଼ୋଶୀଙ୍କର ତାଚ୍ଛଲ୍ୟର ପାତ୍ର ହୋଇଥିଲା, ସେତେ-ବେଳେ କଲିକତା ମହାନଗରୀରେ ଜଣେ ଓଡ଼ିଆ ପଣ୍ଡିତଙ୍କର ପ୍ରଶସ୍ତି କେତେକ ସଂକୀର୍ଣ୍ଣମନା ଓଡ଼ିଆବିଦ୍ୱେଷୀଙ୍କର ଚକ୍ଷୁଶୂଳ ହେବା ଅସମ୍ଭବ ନଥିଲା ।

ବ୍ରାହ୍ମ ସମାଜ ଓ ଆର୍ଯ୍ୟ ସମାଜର ଆଭିମୁଖ୍ୟ ସମାନ ଥିଲେହେଁ ବ୍ରାହ୍ମ ସମାଜର ପ୍ରତିଷ୍ଠାତା ରାଜା ରାମମୋହନ ରାଏ ଆଉ ଇହଧାମରେ ନ ଥିଲେ । ବ୍ରାହ୍ମ ସମାଜ ଭିତରେ ଦଳାଦଳି ମୁଣ୍ଡ ଟେକି ଥିଲା । ତେଣୁ ହରିହର ଦୟାନନ୍ଦଙ୍କ ଠାରୁ ଯେ କୋମଳ ବ୍ୟବହାର ପାଇଥିଲେ ତାହା ସେତେବେଳର ସାକାରଦ୍ରୋହୀ ବ୍ରାହ୍ମ ସମାଜର ନେତୃବୃନ୍ଦଙ୍କଠାରୁ ମିଳିବା ସମ୍ଭବ ନଥିଲା ।

କୁସଂସ୍କାର ବିରୋଧରେ ହରିହରଙ୍କ ଦୃଢ଼ ମତ ଓ ଅକାଟ୍ୟ ଯୁକ୍ତି ସନାତନ ପନ୍ଥୀଙ୍କୁ ଇତସ୍ତତଃ କରୁଥିବାର ସଂସ୍କାରପନ୍ଥୀମାନଙ୍କୁ ଅଜଣା ନଥିଲା । କଲିକତାରୁ ଜନ୍ମ ନେଇଥିବା ବ୍ରାହ୍ମଧର୍ମର ମତ କଟକ ଓ ପୁରୀରେ ପ୍ରବଳ ଭାବରେ ପ୍ରସାର କରାଇବାର ଉଦ୍ୟମ ଚାଲିଥିଲା । କଲିକତାର ଲୋକେ ଓଡ଼ିଶାକୁ ସେମାନଙ୍କର ପଦାନତ ରାଜ୍ୟ ବୋଲି ମନେକରୁଥିଲେ । ତେଣୁ ହରିହରଙ୍କୁ ହିଂସା କରିବା ସ୍ୱାଭାବିକ ଥିଲା । କଲିକତାର କେତେକ ବ୍ରାହ୍ମଧର୍ମୀ, ପଣ୍ଡିତ ହରିହରଙ୍କୁ ସଂସ୍କାରବାଦୀ ଜାଣି ତାଙ୍କ ସ୍ୱତନ୍ତ୍ରତା ଲୋପ କରିବା ଉଦ୍ଦେଶ୍ୟରେ ତାଙ୍କୁ ବ୍ରାହ୍ମ ସମାଜରେ ଯୋଗଦେବା ପାଇଁ ପ୍ରବର୍ତ୍ତାଇଥିଲେ । ହରିହର ବ୍ରାହ୍ମ ସମାଜରେ ଯୋଗଦେଇ ସେମାନଙ୍କ ଗୋଡ଼ାଣିଆ ହୋଇଯାଇଥିଲେ ହୁଏତ ତାଙ୍କ ପ୍ରତି ବିଶେଷ ବିପଦ ପଡ଼ିନଥାନ୍ତା ।

ହରିହର ଓଡ଼ିଆ ଜାତିକୁ କୁସଂସ୍କାରରୁ ଉଦ୍ଧାର କରି ଦେଶକୁ ଉନ୍ନତ କରିବା ପାଇଁ ସଂସ୍କାରଧର୍ମୀ ହୋଇଥିଲେ ମଧ୍ୟ, ସେ ପରମ ଦେଶଭକ୍ତ ଥିଲେ । ତେଣୁ କଲିକତାର ବ୍ରାହ୍ମ ନେତାଙ୍କର ପ୍ରସ୍ତାବରେ ରାଜି ହୋଇଯିବା ତାଙ୍କ ପକ୍ଷରେ ସମ୍ଭବ ନଥିଲା ।

Digitized by PPRACHIN, SOA

## ୪୭ । ଅସହିଷ୍ଣୁଙ୍କ ଗୁପ୍ତ ଷଡ଼ଯନ୍ତ୍ର ଓ ଅପକର୍ମ :

ହରିହରଙ୍କର ସେପରି ପ୍ରତ୍ୟାଖ୍ୟାନ ଯୋଗୁ କେତେକ ଲୋକ ଅସହିଷ୍ଣୁ ହୋଇଉଠିଥିବା ସମ୍ଭବ । ସେହି ଅସହିଷ୍ଣୁ ଲୋକଙ୍କ ମଧ୍ୟରୁ କେତେକ ଉପରେ ଉପରେ ସଦ୍ଭାବ ଦେଖାଉଥିଲେ ମଧ୍ୟ ତାଙ୍କୁ ସେମାନଙ୍କ ପଥର ଏକ କଣ୍ଟକ ମନେ କରି ବୋଧହୁଏ ସେହି କଣ୍ଟକ ଉତ୍ପାଟନ କରିବାର ଗୁପ୍ତଯୋଜନା କରିଥିଲେ । ସେହିମାନେ ହରିହରଙ୍କ ସଙ୍ଗେ ଓତପ୍ରୋତଃ ଭାବରେ ମିଶି ତାଙ୍କ ଖାଦ୍ୟରେ ସ୍ନାୟୁବିଷ ପ୍ରୟୋଗ ଦ୍ୱାରା ହେଉ ବା ମନ୍ତ୍ରତନ୍ତ୍ର ଦ୍ୱାରା ହେଉ ହରିହରଙ୍କର ମାନସିକ କ୍ରିୟା ଓ ବାକଶକ୍ତିରେ ବ୍ୟାଘାତ ଆଣି ତାଙ୍କୁ ମୃତ୍ୟୁ ଆଡ଼କୁ ଟାଣି ନେବା ପାଇଁ ଚେଷ୍ଟା କରିଥିବା ସମ୍ଭବ ।

ସେ ଯାହାହେଉ କଲିକତାରେ ସୁସ୍ଥ ଯୁବକ ବାଗ୍ମୀ ହରିହର ହଠାତ୍ ମସ୍ତିଷ୍କର ଭାରସାମ୍ୟ ହରାଇବା ସଙ୍ଗେ ସଙ୍ଗେ ଜ୍ଞାନ ହରାଇ ବାକ୍‌ଶକ୍ତିରହିତ ହୋଇଗଲେ । ହରିହରଙ୍କର ସମସ୍ତ ଯୋଜନା ଧୂଳିସାତ୍ ହୋଇଗଲା । ତାଙ୍କର ଆଉ ଆଜମୀର ଯିବା ସମ୍ଭବ ହେଲା ନାହିଁ । ପ୍ରସ୍ତାବ ଅନୁଷ୍ଠାନଟି ସ୍କୁଲରେ ରହିଗଲା । ଓଡ଼ିଆ ଜାତିର କି କ୍ଷତି ହେଲା ତାହା ବର୍ଣ୍ଣନା କରିହେବ ନାହିଁ । ଆଜମୀରରୁ ଫେରିବା ପରେ ୟୁରୋପ ଯାଇ ଭାରତୀୟ ସଂସ୍କୃତି ଓ ବେଦ-ବେଦାନ୍ତର ପ୍ରଚାର ପାଇଁ ବିମଳ ଓ ବିମ୍ବ ସାହେବ ପ୍ରଭୃତିଙ୍କ ଉଦ୍ୟମରେ ତାଙ୍କ ଯାତ୍ରା ସ୍ଥିର ହୋଇ ସାରିଥିଲା । ସେପରି ଯାତ୍ରା ପାଇଁ ବ୍ରାହ୍ମସମାଜର କର୍ତ୍ତା ମଧ୍ୟ ଆଗ୍ରହୀ ଥିଲେ । ହରିହର ୟୁରୋପ ଯାଇ ତାଙ୍କ ନିଜ ମତ ପ୍ରଚାର କରିଥିଲେ ହୁଏତ ସେମାନଙ୍କ ପ୍ରଚାରର ସ୍ୱାର୍ଥରେ ବାଧା ଉପୁଜି ଥାଆନ୍ତା, ସେଥିପାଇଁ ହରିହରଙ୍କ ୟୁରୋପ ଯାତ୍ରା ବନ୍ଦକରିବା ପାଇଁ ହୁଏତ ସେପରି ଅପକର୍ମ କରାଯାଇଥିଲା । ସେ ଯାହାହେଉ ହରିହରଙ୍କ ଅନ୍ତର୍ଧାନର ପରେ ପରେ ଜଣେ ବ୍ରାହ୍ମ ସମାଜର ଉଚ୍ଚକର୍ତ୍ତା ୟୁରୋପ ଭ୍ରମଣରେ ଯାଇଥିଲେ ।

## ୪୭ । ମୂକ ହରିହରଙ୍କ ପାଇଁ ଓଡ଼ିଶାରେ ଶୃଙ୍ଖଳ୍ୟ :

କଲିକତାରୁ ଜ୍ଞାନଶୂନ୍ୟ ମୂକ ଭାବରେ ହରିହରଙ୍କୁ କଟକ ଅଣାଯାଇଥିଲା । ହରିହର ମୂକ ହୋଇ ଓଡ଼ିଶା ଫେରିବାରେ କର୍ମୀଗାର ଗୌରୀଶଙ୍କର ରାୟଙ୍କ ଭଳି ଦେଶପ୍ରେମୀମାନେ ବଡ଼ ମର୍ମାହତ ହୋଇ ପଡ଼ିଥିଲେ । ହରିହରଙ୍କ ଚିକିତ୍ସାପାଇଁ

Digitized by PPRACHIN, SOA

ଅର୍ଥ ସଂଗ୍ରହ କରିବାକୁ ଗୌରୀଶଙ୍କରଙ୍କ ଅଧ୍ୟକ୍ଷତାରେ ଗୋଟିଏ ପାଣ୍ଠି ଗଢ଼ାଯାଇ ଉତ୍କଳ ପତ୍ରିକାରେ ନିବେଦନ ପ୍ରକାଶ କରାଯାଇଥିଲା । ସେଥିରେ ଥିଲା— "ବାଗ୍ମୀ, ଦେଶସେବୀ, ସଂସ୍କାରକ, ଶିକ୍ଷାନୁରାଗୀ ପଣ୍ଡିତ ହରିହର ଦାସଶର୍ମା ତାଙ୍କର କଳ୍ପିତ ପୁରୀ ଶିକ୍ଷା ଅନୁଷ୍ଠାନ ପାଇଁ ଅର୍ଥ ସଂଗ୍ରହ କରିବାକୁ କଲିକତା ଯାଇ କେବଳ ନିଃସ୍ୱ ହୋଇ ଫେରି ନାହାନ୍ତି, ମୂକ ହୋଇ ମଧ୍ୟ ଫେରିଛନ୍ତି ।

ତାଙ୍କର ଚିକିତ୍ସାପାଇଁ 'ବୃହତ୍ ଛାଗଳାଦ୍ୟ' ଘୃତ ପ୍ରସ୍ତୁତ କରାଯିବା ପାଇଁ ଗ୍ଶତ ଟଙ୍କା ଦରକାର । ଓଡ଼ିଶାର ବଦାନ୍ୟ ବ୍ୟକ୍ତିମାନେ ସେ ପାଣ୍ଠିକୁ ମୁକ୍ତ ହସ୍ତରେ ଦାନ କରନ୍ତୁ ।

ପ୍ୟାରୀମୋହନ ଆଚାର୍ଯ୍ୟଙ୍କ ପ୍ରତିଷ୍ଠିତ 'ଉତ୍କଳ ପୁତ୍ର' ନାମକ ସମ୍ବାଦ-ପତ୍ରରେ ମଧ୍ୟ ପଣ୍ଡିତ ହରିହରଙ୍କ ସମ୍ବନ୍ଧରେ ସେପରି ସମ୍ବାଦ ସବୁ ପ୍ରକାଶିତ ହୋଇଥିଲା ।

ଉ. ପୁ. ୩-୧୨-୧୮୭୩—ଆମ୍ଭେମାନେ ଅତ୍ୟନ୍ତ ଦୁଃଖର ସହିତ ପାଠକଙ୍କୁ ଜଣାଉଅଛୁ, ଯେଉଁ ହରିହର ଦାସ ପଣ୍ଡିତ ଓଡ଼ିଶାରେ ସଂସ୍କୃତ କଲେଜ ସ୍ଥାପନ କରିବା ନିମିତ୍ତ ଏଠାରୁ ବାହାରିଥିଲେ, ସେ କଲିକତାରେ ଜ୍ଞାନ ଶୂନ୍ୟ ହୋଇ ଏଠାକୁ ଫେରି ଆସିଅଛନ୍ତି ।

## ପଣ୍ଡିତ ହରିହର ଦାସ

ଉ. ପୁ. ୧୭-୧୨-୧୮୭୩—ଦେଶୀୟ ପଣ୍ଡିତ ହରିହର ଦାସ ଜ୍ଞାନ-ଶୂନ୍ୟ ହୋଇ ଏଠାକୁ ଆସିଥିବା କଥା ଏଥି ପୂର୍ବେ ପାଠକଙ୍କୁ ଜଣାଇଥିଲୁ । ପୁଣି ଦୁଃଖରେ ସହିତ ଅବଗତ ହେଲୁ ଯେ, ସେ କେବଳ ଜ୍ଞାନଶୂନ୍ୟ ହୋଇ ଆସିଛନ୍ତି ଏମନ୍ତ ନୁହେଁ । ସେଥି ସଙ୍ଗେ ସଙ୍ଗେ ଅର୍ଥଶୂନ୍ୟ ହୋଇ ମଧ୍ୟ ଆସିଅଛନ୍ତି ।

ବର୍ତ୍ତମାନ ତାଙ୍କ ଚିକିତ୍ସା ଓ ଦୈନିକ ଖର୍ଚ୍ଚ ଚଳାଇବା ସକାଶେ ଚନ୍ଦା ସଂଗୃହୀତ ହେଉଅଛି । ଏ ଚାନ୍ଦା ସଂଗ୍ରହର ଭାର ବାବୁ ଗୌରୀଶଙ୍କର ରାୟ ସ୍ୱୟଂ ଅତୁଳ ସହାନୁଭୂତି ସହକାରେ ଗ୍ରହଣ କରି ଅଛନ୍ତି । ତାଙ୍କର ଏ କର୍ତ୍ତବ୍ୟ-ସାଧନ ତତ୍ପରତା ସକାଶେ ଅବଶ୍ୟ ସେ ପ୍ରଶଂସାର ପାତ୍ର । କେତେ ଟଙ୍କା ସରିକ ଚାନ୍ଦା ଉଠିଲାଣି, ଆମ୍ଭମାନଙ୍କୁ ଜଣାନାହିଁ । ବୋଧହୁଏ ଅଧିକ ଉଠି ନଥିବ ।

Digitized by PPRACHIN, SOA

ଆହୁରି ଗୋଟିଏ ପ୍ରସ୍ତାବ ଏ ସମ୍ବନ୍ଧରେ ଆମେ କରୁଅଛୁଁ । ତାହା ଏହିକି ଯେ—ବାବୁ ମହାଶୟ ପଣ୍ଡିତବରଙ୍କ ସକାଶେ ଗୋଟିଏ ସାଧାରଣ ସଭା ଆହୂତ କରନ୍ତୁ । ଯେତେବେଳେ ବିଦେଶୀୟ ଜଣେ କବି ମରିଗଲରୁ, ତାଙ୍କ ପୁତ୍ର-ମାନଙ୍କ ଭରଣପୋଷଣ ଓ ଶିକ୍ଷାଦାନ ସକାଶେ ଏଠା ଲୋକେ ଦୁଇଶତାଧିକ ଟଙ୍କା ଦାନ କଲେ, ସେତେବେଳେ ସ୍ୱଦେଶୀୟ ଜଣେ ବିଖ୍ୟାତ ପଣ୍ଡିତଙ୍କ ସକାଶେ ଦୁଇ ତିନିଶ ଟଙ୍କା ଦେବେ, ଏ କଥାକୁ ଆମେ ଆଦୌ ଆଶ୍ଚର୍ଯ୍ୟ ମଣୁ ନାହୁଁ । ଯଦି ସ୍ଥାନୀୟ ଲୋକେ ଏ କର୍ତ୍ତବ୍ୟରେ ତ୍ରୁଟି କରନ୍ତି ତା'ହେଲେ ନିଶ୍ଚୟ ସେମାନେ ଅକୃତଜ୍ଞ ବୋଲି ଯୁଗ ଯୁଗାନ୍ତରେ ପରିଚିତ ହୋଇ ରହିବେ ।

ହରିହରଙ୍କ ପରି ଜଣେ ପଣ୍ଡିତ ଦେଶାନୁରାଗୀଙ୍କୁ ଅବହେଳାରେ ଅକର୍ମଣ୍ୟ ହୋଇଯିବାକୁ ଦେଲେ ଶୀଘ୍ର ଓଡ଼ିଶା ଆଉ ଏପରି ଜଣେ ପାଇବେ ନାହିଁ । ଏଠା ଚିକିତ୍ସକ କହୁଅଛନ୍ତି ଯେ, ପଣ୍ଡିତବର ଉନ୍ମାଦ ରୋଗଗ୍ରସ୍ତ ଓ ବୃହତ୍ ଛାଗଳାଦ୍ୟ ଘୃତ ଏଥିର ଉପଯୁକ୍ତ ଔଷଧ । ଏହାକୁ ପ୍ରସ୍ତୁତ କରି ସେବନ କରାଇବା ସକାଶେ ବର୍ତ୍ତମାନ ନ୍ୟୂନାଧିକରେ ଏକଶହ ଟଙ୍କା ଆବଶ୍ୟକ । ଏହା ସୁଦ୍ଧା କି ଓଡ଼ିଶାରୁ ଉଠିପାରିବ ନାହିଁ ? ହେ ଓଡ଼ିଶାବାସୀମାନେ ! ଆମ୍ଭ-ମାନଙ୍କ ଯତ୍ନରେ ଯେତେଦୂର ସାହାଯ୍ୟ ସେ ପାଇ ପାରନ୍ତି, ଆସ ତାଙ୍କୁ ଦେବା । ଏଥିରେ ତାଙ୍କ ଭାଗ୍ୟରେ ଯାହା ଥାଉ । ଅତଏବ ପୁଣି ଥରେ ସମସ୍ତଙ୍କୁ କହୁଅଛୁ, ଆପଣା ସାଧ୍ୟମତେ ଚେଷ୍ଟା ତାଙ୍କ ସକାଶେ କରିବାକୁ କେହି ତ୍ରୁଟି ବା ବିଳମ୍ବ ନ କର ।

ସେହି ସମୟରେ 'ଉତ୍କଳ ଦୀପିକା'ରେ ପ୍ରକାଶିତ ସମ୍ବାଦ :—

ଉ. ଦୀ. ତା ୧୪ରିଖ ଫେବୃୟାରୀ ୧୮୭୪ ମସିହା ।

ଯେତେବେଳେ ମନୁଷ୍ୟର ଦୁଃଖ ହୁଅଇ, ଚଉରିଆଡ଼ୁ ନାନା ଆପଦ ଆସି ପଡଇ । ପଣ୍ଡିତ ହରିହର ଦାସଙ୍କ ବିଷୟରେ ତଳଲିଖିତ ଅତି ଶୋଚନୀୟ ସମ୍ବାଦ ମହନ୍ତ ନାରାୟଣ ଦାସଙ୍କ ଠାରୁ ପ୍ରାପ୍ତ ହୋଇ ପାଠକଙ୍କ ଗୋଚରାର୍ଥେ ପ୍ରକାଶ କରୁଅଛୁ ।

ଏଥିରେ ପାଠକମାନେ ଜାଣିବେ ଯେ, ପଣ୍ଡିତଙ୍କର ଦୁର୍ଦ୍ଦଶାର ଆଉ ସୀମା ନାହିଁ ଓ ଦୟାବାନ ପାଠକମାନେ ତାହାଙ୍କର ଯାହା କିଛି ଉପକାର କରିବେ, ବର୍ତ୍ତମାନ ସମୟରେ ତାହା କଲେ ସାର୍ଥକ ହେବ । ଯେ ଯାହା ପାରନ୍ତି

Digitized by PPRACHIN, SOA

ଆମ୍ଭମାନଙ୍କ ନିକଟକୁ ଅଥବା ପୁରୀର ମହାନ୍ତ ନାରାୟଣ ଦାସଙ୍କ ନିକଟକୁ ପଠାଇଦେଲେ ହତଭାଗ୍ୟ ପଣ୍ଡିତଙ୍କ କାର୍ଯ୍ୟରେ ଲାଗିବ ।

ସମ୍ବାଦଟି ଏହି ଯେ, ମାଘ ଶୁକ୍ଳ ଚତୁର୍ଦ୍ଦଶୀ ରାତିରେ ପଣ୍ଡିତଙ୍କ ଶଯ୍ୟା ନିକଟରେ ଥିବା ପ୍ରଦୀପରେ କେଉଁରି ତାଙ୍କ ଲୁଗା ଲାଗି, ଲୁଗା ଓ କୁରୁତା ପୋଡ଼ିବାର ଆରମ୍ଭ ହେଲା । ପଣ୍ଡିତ ସ୍ୱୟଂ ବାକ୍‌ଶକ୍ତିହୀନ । କାହାକୁ ଡାକି ପାରିଲେ ନାହିଁ । ସୁତରାଂ ଏହାଙ୍କ ସାହାଯ୍ୟ ପାଇଁ ଆସିବା ପୂର୍ବ, ପୃଷ୍ଠଭାଗ ସମଗ୍ର ଓ ହସ୍ତ ଅର୍ଦ୍ଧେ ଓ ପାଦ ଦ୍ୱୟର ଅଧିକାଂଶ ଦଗ୍ଧ ହୋଇଗଲା । ସେହି ଦିନଠାରୁ ବାବୁ ଡାକ୍ତର ବନମାଳୀ ସିଂହ ଏହାଙ୍କ ଚିକିତ୍ସା କରୁ ଅଛନ୍ତି । କି ହେବ ବୋଲାଯାଇ ନପାରେ ।

× × × ×

ଏ ସମ୍ବାଦ ଲେଖିଲା ଉତ୍ତାରୁ ଆମ୍ଭେମାନେ ପୁରୀସ୍ଥିତ ଜଣେ ବନ୍ଧୁଙ୍କ ପତ୍ରରୁ ଅବଗତ ହେଲୁ ଯେ, ଗତ ମାସ ( ଫେବୃଆରୀ ) ନଅ ତାରିଖରେ ପଣ୍ଡିତଙ୍କ ମାନବଲୀଳା ଶେଷ ହେଲା । ଏଥିରେ ଆମ୍ଭେ କି ପର୍ଯ୍ୟନ୍ତ ଦୁଃଖିତ ହୋଇଅଛୁ କହି ନ ପାରୁ । ଓଡ଼ିଶାର ଘୋର ଦୁର୍ଭାଗ୍ୟ ବୋଲିବାକୁ ହେବ ଯେ, ଏହାର ଉନ୍ନତି ପାଇଁ ଯେ ବ୍ୟକ୍ତି ପ୍ରଯତ୍ନ କରିବାକୁ ପ୍ରବୃତ୍ତ ହୋଇଥିଲେ, ଏମନ୍ତ ଦୁର୍ଘଟଣାରେ ତାହାଙ୍କର ଜୀବନ ଶେଷ ହେଲା । ଆମ୍ଭେମାନେ ଏହାଙ୍କଠାରୁ ଅନେକ ଶୁଭ ଆଶା କରିଥିଲୁ ; କିନ୍ତୁ ଦୈବ ବିଡ଼ମ୍ବନା ପ୍ରତି କାହାର ଆପତ୍ତି ।

## ୪୮ । ହରିହରଙ୍କ ମୃତ୍ୟୁ ରହସ୍ୟ :

ଏ ସବୁ ସମ୍ବାଦରୁ ସେତେବେଳେ ଓଡ଼ିଶାରେ ଥିବା କତିପୟ ସାପ୍ତାହିକ ଖବରକାଗଜ ଓ ସେ କାଳର ମୁଷ୍ଟିମେୟ ଦେଶପ୍ରେମୀ କପରି ପଣ୍ଡିତ ହରିହରଙ୍କ ବ୍ୟକ୍ତିତ୍ୱରେ ଅଭିଭୂତ ଥିଲେ ଓ ତାଙ୍କ ପ୍ରତି କପରି ସହାନୁଭୂତିଶୀଳ ଥିଲେ ତାହା ଅନୁମେୟ । ସେମାନେ ସେହି ବିରାଟ ବ୍ୟକ୍ତିଙ୍କ ଆରୋଗ୍ୟ ପାଇଁ ବ୍ୟାକୁଳ ହୋଇ ପଡ଼ିଥିଲେ ମଧ୍ୟ ତାଙ୍କ ସମ୍ବନ୍ଧରେ ସଠିକ ସମ୍ବାଦ ଠିକ୍ ସମୟରେ ପାଇ ପାରୁ ନଥିଲେ । ସେତେବେଳର ରାସ୍ତାଘାଟ, ଯୋଗାଯୋଗ ଓ ସମ୍ବାଦ ପ୍ରେରଣରେ ଅଭାବ ଯୋଗୁ ତାଙ୍କ ମୃତ୍ୟୁର ସମ୍ବାଦ ମଧ୍ୟ ପୁରୀରୁ ଆସି ଠିକ୍ ସମୟରେ କଟକରେ ପହଞ୍ଚିପାରି ନଥିଲା । ସେ ସମ୍ବାଦ ଜାଣିନପାରି ତାଙ୍କ

Digitized by PPRACHIN, SOA

ମୃତ୍ୟୁର ପାଞ୍ଚ ଦିନ ପରେ ମଧ୍ୟ 'ଉତ୍କଳ ଦୀପିକା' ସାହାଯ୍ୟ ପାଇଁ ନିବେଦନ କରି ଚାଲିଥିଲେ ।

ସେପରି ପରିସ୍ଥିତିରେ ହରିହରଙ୍କ ଦୁର୍ଦ୍ଦଶା ବା ମୃତ୍ୟୁର ପ୍ରକୃତ କାରଣ ଅନୁସନ୍ଧାନ କରିବାର ଉପାୟ ନଥିଲା । ତେଣୁ ତାହା ରହସ୍ୟମୟ ହୋଇ ରହିଗଲା । ହରିହରଙ୍କ ଗୁଣଗ୍ରାହୀ ଓ ଶୁଭେଚ୍ଛୁ ବନ୍ଧୁମାନେ ତାଙ୍କ ମୃତ୍ୟୁକୁ ଦୈବ ବିଡ଼ମ୍ବନା ବୋଲି ଧରିନେଇ ଭାଗ୍ୟକୁ ଆଦର ରଖିବାକୁ ବାଧ୍ୟ ହୋଇଥିଲେ । ସେତେବେଳର ଅସ୍ପଷ୍ଟ ଘଟଣାବଳୀରୁ ପଣ୍ଡିତ ହରିହରଙ୍କ ସ୍ୱାସ୍ଥ୍ୟହାନି ଓ ଅଗ୍ନି ସଂଯୋଗରେ ମୃତ୍ୟୁର କାରଣକୁ ଅନୁସନ୍ଧିତ୍ସୁ ଦୃଷ୍ଟିରେ ବିଶ୍ଳେଷଣ କଲେ ବହୁକଥା ଗୋପନ ରଖାଯାଇଥିବା ପରି ମନେହୁଏ । ସେଥିରେ ଅସହିଷ୍ଣୁମାନଙ୍କର ଏକ ଘୃଣ୍ୟ ଷଡ଼ଯନ୍ତ୍ରର ଗୁପ୍ତପ୍ରବାହ ସେକାଳରେ ଭିତରେ ଭିତରେ ବୋହି ଚାଲିଥିବା ପରି ମଧ୍ୟ ଅନୁମିତ ହୁଏ ।

## ପଣ୍ଡିତ ହରିହରଙ୍କ ଦୁର୍ଗତିର ସମୀକ୍ଷା

### ୪୯ । କଟକ ଚିକିତ୍ସା :

ଘଟଣା ପ୍ରବାହରୁ ଜଣାପଡ଼େ ଆଗରୁ କିଛି ରୋଗର ଲକ୍ଷଣ ନ ଥାଇ ହଠାତ୍ କଲିକତାରେ ହରିହର ଜ୍ଞାନଶୂନ୍ୟ ଓ ମୂକ ହୋଇଗଲେ । ତାଙ୍କୁ ତାଙ୍କ ସଙ୍ଗୀମାନେ କଲିକତାରୁ କଟକ ନେଇଆସି ଚିକିତ୍ସାର ଆୟୋଜନ କଲେ । କଟକରେ ବନ୍ଧୁମାନଙ୍କ ପ୍ରଯତ୍ନରେ ସେ କେତେକାଂଶରେ ଆରୋଗ୍ୟ ହେବାଦିଗକୁ ଗତି କରୁଥିଲେ । ଜାତୀୟ ଚେତନାର ଅନ୍ୟତମ ପ୍ରବର୍ତ୍ତକ 'ଉତ୍କଳ ଦୀପିକା'ର ସମ୍ପାଦକ କର୍ମବୀର ଗୌରୀଶଙ୍କରଙ୍କ ପରି ହରିହରଙ୍କ ଶୁଭେଚ୍ଛୁମାନେ ତାଙ୍କୁ କଟକରେ ରଖାଇ ତାଙ୍କ ଆରୋଗ୍ୟଲାଭ ପାଇଁ ପ୍ରାଣପଣେ ଚେଷ୍ଟା କରିଥିଲେ ।

### ୫୦ । ପୁରୀ ପ୍ରେରଣ :

ସେତିକିବେଳେ କାହିଁକି କେଜାଣି ପଣ୍ଡିତ ହରିହରଙ୍କୁ କଟକରେ ଭଲ ଭାବରେ ଚିକିତ୍ସିତ ହେବା ପୂର୍ବରୁ ହଠାତ୍ ପୁରୀ ପଠାଇ ଦିଆଗଲା । ସେ କାଳରେ ମଧ୍ୟ ପୁରୀ ପ୍ରଭୃତିଠାରୁ କଟକରେ ଚିକିତ୍ସା ବ୍ୟବସ୍ଥା ଭଲ ଥିଲା ଓ ଅନ୍ୟଠାରୁ ରୋଗୀମାନେ ଚିକିତ୍ସା ପାଇଁ ରାଜଧାନୀ କଟକକୁ ଆସୁଥିଲେ । ପୁରୀରେ

Digitized by PPRACHIN, SOA

ପହଞ୍ଚିବା ସଙ୍ଗେ ସଙ୍ଗେ ତାଙ୍କର ରୋଗ ବଢ଼ିଯାଉଛି ବୋଲି ପ୍ରଚାର ହୋଇଥିଲା । ହରିହର ପୁରୀରେ ପାଗଳ ପରି ହେଉଥିବାରୁ ତାଙ୍କୁ ଘର ଭିତରେ ବନ୍ଦ କରି ରଖାଯାଉଛି ବୋଲି ଶୁଣାଗଲା । ସେ ସବୁ ସତ୍ତ୍ୱେ ସେ ତାଙ୍କ ପଢ଼ିବା ଅଭ୍ୟାସ ଛାଡ଼ି ନଥିଲେ ବୋଲି ଖବର ମିଳୁଥିଲା ।

## ୪୧ । ଅଗ୍ନି ସଂଯୋଗର ଏକ ବିବରଣ :

ଦିନେ ରାତି ସମୟରେ ସେହି କୋଠରୀ ଭିତରେ ନିଜର ପୋଷାକ ପିନ୍ଧି ଦୀପ ଲଗାଇ ପଢ଼ିବାରେ ନିମଗ୍ନ ଥିବା ସମୟରେ ତାଙ୍କ କୁର୍ତ୍ତାରେ ନିଆଁ ଲାଗିଗଲା । ସେ ପ୍ରଥମେ ତାହା ଜାଣି ପାରିଲେ ନାହିଁ । ପରେ ଜାଣିଲାବେଳକୁ ଦୁଆର ଖୋଲି ବାହାରକୁ ଆସି ପାରିଲେ ନାହିଁ ଓ ସେହି ଘର ଭିତରେ ସେ ପୋଡ଼ିଗଲେ । ପରେ ତାଙ୍କୁ ସେହି ଦଗ୍ଧ ଅବସ୍ଥାରେ ଉଦ୍ଧାର କରାଗଲା ।

## ୪୨ । ଶେଷ ଚିକିତ୍ସା

ହରିହରଙ୍କ ପୁରୀଘର ନିକଟରେ ଥିବା ଭକ୍ତକବି ମଧୁସୂଦନଙ୍କ ବଂଶଜ ଡାକ୍ତର ବନମାଳୀ ପଂଡ଼ା ହରିହରଙ୍କୁ ଚିକିତ୍ସା କରୁଥିଲେ । ସେ ଚିକିତ୍ସା ସତ୍ତ୍ୱେ ମାତ୍ର ତିନିଦିନ ପରେ ନଅ ତାରିଖ ଫେବୃଆରୀ ୧୯୦୪ ଖ୍ରୀଷ୍ଟାବ୍ଦରେ ହରିହରଙ୍କ ଅମରାତ୍ମା ସ୍ୱର୍ଗଗାମୀ ହେଲା । ସେ ଖବର ପାଇ ପୁଣି ଗୌରୀଶଙ୍କର ତାଙ୍କ ପତ୍ରିକାରେ ଦୁଃଖ ପ୍ରକାଶ କରି ଲେଖିଥିଲେ, "କାଳ ସହିଲା ନାହିଁ । ଚିକିତ୍ସା ହୋଇ ପାରିଲା ନାହିଁ । ପଣ୍ଡିତଙ୍କ ମର ଶରୀରକୁ ଛାଡ଼ି ତାଙ୍କର ଅମରାତ୍ମା ଦେଶବାସୀଙ୍କୁ ଶୋକସାଗରରେ ଭସାଇ ସ୍ୱର୍ଗଗାମୀ ହୋଇଗଲା ।"

## ୪୩ । ହରିହରଙ୍କ ଆତ୍ମୀୟଙ୍କ ବିବରଣ :

ପଣ୍ଡିତ ହରିହରଙ୍କ ମୃତ୍ୟୁଶଯ୍ୟା ନିକଟରେ ଉପସ୍ଥିତ ଥିବା ତାଙ୍କ ଜ୍ଞାତି ପିତୃବ୍ୟ ବଳଭଦ୍ର ଦାସଙ୍କ ବିବୃତିରୁ ଜଣାଯାଏ—ପୁରୀ ଆସି ପଣ୍ଡିତ ହରିହରଙ୍କ ରୋଗ ବଢ଼ିଗଲା । ଦିନେ ତାଙ୍କୁ ଘରେ ବନ୍ଦ କରି ସନ୍ଧ୍ୟାରେ ବାହାରରୁ ସେ ଦୁଆରର ଶିକୁଳି ଦେଇ ଅନ୍ୟମାନେ ଚାଲିଯାଇଥିଲେ । ଘର ଭିତରେ ଦୀପ ଜଳୁଥିଲା ଓ ସେହି ଘରେ ବିଲାତ ଯିବାପାଇଁ ତିଆରି ହୋଇଥିବା ପୋଷାକସବୁ ଖୋଲି ଆଲମାରୀଟିରେ ରହିଥିଲା । ପାଗଳ ଓ ମୂକ ଅବସ୍ଥାରେ କାହିଁକି କେଜାଣି ହଠାତ୍ ସେ ପୋଷାକ ପିନ୍ଧି ଘରେ ବୁଲି ବୁଲି ପୋଷାକରେ

Digitized by PPRACHIN, SOA

ଧାପ ଲାଗିଗଲା । ପାଟି ଫିଟିଯାଇ ଗୋଟିଏ ଚିତ୍କାର ଶୁଭିଲା । ମାତ୍ର ଆଉ ବଞ୍ଚାଇ-ବାର ଉପାୟ ନଥିଲା । ପ୍ରାୟ ୪୮ ଘଣ୍ଟା ପରେ ଅର୍ଦ୍ଧଦଗ୍ଧ ହରିହର ଜୀବନର କର୍ମନିଷ୍ଠୁର ରକ୍ଷି କଅଁଳ କଦଳୀ ପତ୍ରରେ ଶୋଇ ଦେହତ୍ୟାଗ କଲେ ।

## ୫୪ । ସମୀକ୍ଷା :

ଉତ୍କଳ ପତ୍ରିକା ଅନୁସାରେ—ରାତିରେ ଶଯ୍ୟା ନିକଟରେ ଥିବା ପ୍ରଦୀପରୁ ନିଆଁ ଲାଗି ତାଙ୍କ ଲୁଗା କୁରୁତା ପୋଡ଼ିଗଲା । ପାଖରେ କେହି ନ ଥିଲେ । ବାକଶକ୍ତି ହୀନତା ଯୋଗୁ ସେ ଡାକ ପାରିଲେ ନାହିଁ ।

ଆତ୍ମୀୟଙ୍କ ବିବରଣରୁ—ପଣ୍ଡିତଙ୍କୁ ପାଗଳ ବୋଲି ଘର ଭିତରେ ରଖା-ଯାଇ ଦିନେ ସନ୍ଧ୍ୟାରେ ବାହାରୁ ଶିକୁଳି ଲଗାଯାଇଥିଲା । ତାଙ୍କ ନିକଟରେ କୌଣସି ଆତ୍ମୀୟ ବା ବନ୍ଧୁ ସେତେବେଳେ ନଥିଲେ । ଘର ଭିତରେ ଦୀପ ଜଳୁ-ଥିଲା । ହରିହର ବଳାନ୍ତ ପୋଷାକ ପିନ୍ଧି ଘର ଭିତରେ ବୁଲୁଥିଲେ ପୋଷାକରେ ଦୀପ ଲାଗିଗଲା । ପାଟି ଫିଟିଯାଇ ସେ ଚିତ୍କାର କଲେ ।

ଏ ଦୁଇଟିଯାକ ଉକ୍ତିରେ ପ୍ରଭେଦ ଥିଲେ ମଧ୍ୟ ତାଙ୍କର ଏପରି ଅବସ୍ଥାରେ ମଧ୍ୟ ତାଙ୍କ ସେବା ପାଇଁ ବା ତାଙ୍କୁ ଜଗି ରହିବାକୁ କେହି ନଥିବାବେଳେ ତାଙ୍କ ଦେହରେ ଅଗ୍ନି ସଂଯୋଗ ହୋଇଥିବା କଥା ସତ୍ୟ । ସେ ଲୁଗା ପିନ୍ଧିଥିଲେ କି ପ୍ୟାଣ୍ଟ ପିନ୍ଧିଥିଲେ, ଶୋଇଥିଲେ କି ବସି ପଡ଼ିଥିଲେ କିମ୍ବା ଘରେ ପଦଚାରଣା କରୁଥିଲେ, ଏ ସବୁ ଶୁଣା କଥା । ତେଣୁ କୌଣସି ଆତତାୟୀ ତାଙ୍କ ଦେହରେ ଅଗ୍ନି ସଂଯୋଗ କରିଛି କି ନାହିଁ ତାହା କେବଳ ଅନୁମାନର ବିଷୟ ।

## ୫୫ । ପଣ୍ଡିତ ହରିହରଙ୍କ ଶେଷ ଉକ୍ତି :

ପଣ୍ଡିତ ବଳଭଦ୍ର ଦାସ ସେ ଦୁର୍ଘଟଣା ବିଷୟ ଶୁଣି ଗ୍ରାମରୁ ତାଙ୍କ ନିକଟକୁ ଦୃତ ଚାଲି ଆସିଥିଲେ । ତାଙ୍କ ଉକ୍ତିରୁ ଜଣାଯାଏ, ହରିହର ଶେଷ-ଶଯ୍ୟାରେ ପଡ଼ିଥିବା ସେହି ଅଡ଼ଚାଳିଶ ଘଣ୍ଟା ଭିତରେ ତାଙ୍କର ଚେତନାମି ନଥିଲା ଓ ହଠାତ୍ ତାଙ୍କ ପାଟି ଫିଟିଯାଇ ସେ ଟିକିଏ କଥାବାର୍ତ୍ତା କରିପାରୁଥିଲେ । ମୃତ୍ୟୁର କେତେଘଣ୍ଟା ପୂର୍ବରୁ ସେ ବଳଭଦ୍ରଙ୍କ ମୁହଁକୁ ଚାହିଁ ବୋଧହୁଏ ନିଜ ଜୀବନର କର୍ମ ଓ କଳ୍ପନାକୁ ସ୍ମରଣ କରି ସେ ନିମ୍ନଲିଖିତ ଶ୍ଳୋକଟି ବୋଲିଥିଲେ ।

Digitized by PPRACHIN, SOA

ଶ୍ଳୋକଟି ହେଉଛି—

"ନ ଧ୍ୟାତଂ ପଦମୀଶ୍ୱରସ୍ୟ ବିଧିବତ୍ ସଂସାର-ବିଚ୍ଛିତ୍ତୟେ,
ସ୍ୱର୍ଗ ଦ୍ୱାର-କପାଟ-ପାଟନ-ପଟୁ ଧର୍ମୋଽପି ନୋପାର୍ଜିତ,
ନାରୀ ପୀନ ପୟୋଧରୋରୁଯୁଗଳଂ ସ୍ୱପ୍ନେଽପି ନାଲିଙ୍ଗିତଂ
ମାତୃ କେବଳମେବ ଯୌବନବନଚ୍ଛେଦେ କୁଠାର ବୟଂ"

ଜାତିର ଉନ୍ନତି ନିମନ୍ତେ ନିଃସ୍ୱାର୍ଥ ସନ୍ନ୍ୟାସ ବ୍ରତ ଅବଲମ୍ବନ କରି କାର୍ଯ୍ୟ ସିଦ୍ଧି ପାଇଁ ପ୍ରାଣପଣ ଲାଗି ମଧ୍ୟ ତାହା ସଂପୂର୍ଣ୍ଣ କରି ପାରିନଥିବାରୁ ମୃତ୍ୟୁ ଆସନ୍ନ ଜାଣି ହରିହର କ୍ଷୋଭ ପ୍ରକାଶ କରି ସେ କବିତାଟି ବୋଲିଥିଲେ । ଏହାର ଅର୍ଥ—

(ଉଦ୍ଦେଶ୍ୟ ସାଧନରେ ବ୍ୟସ୍ତ ରହି) ସଂସାରରୁ ନିସ୍ତାର ପାଇଁ ବିଧି ଅନୁସାରେ ଈଶ୍ୱର ପଦ ଧ୍ୟାନ କରାଗଲା ନାହିଁ । ସ୍ୱର୍ଗଦ୍ୱାର ଫିଟାଇବାରେ ସମର୍ଥ ଯେ ଧର୍ମ, ତା ବି ଅର୍ଜନ କରାହେଲା ନାହିଁ । (ଅବିବାହିତ ହୋଇ ମଧ୍ୟ) ନାରୀର ପୀନ ସ୍ତନ ଓ ଜଘନ ଯୁଗଳ ସ୍ୱପ୍ନରେ ହେଲେ ବି ଆଲିଙ୍ଗନ କରାହୋଇନାହିଁ । କେବଳ ମାଆର ଯେ ଯୌବନ ରୂପ ବନ, ତାକୁଇ କାଟିବାକୁ ଏକା ମୁଁ କୁହାଡ଼ି ହୋଇ ଜନ୍ମ ପାଇଥିଲି । (ତାଙ୍କର ଜାତି ପାଇଁ ସଂପୂର୍ଣ୍ଣ ସ୍ୱାର୍ଥତ୍ୟାଗ ଓ ଜୀବନୋତ୍ସର୍ଗ ପରେ ମଧ୍ୟ ନିଜର କାର୍ଯ୍ୟ ଅପୂର୍ଣ୍ଣ ରହିଯିବାରୁ ସେ କ୍ଷୋଭ ପ୍ରକାଶ କରିଛନ୍ତି ।)

## ୫୭ । ଭକ୍ତକବି ମଧୁସୂଦନ ରାଓଙ୍କ ଭଳି ଛାତ୍ରଙ୍କ ସହିତ ସମ୍ପର୍କ :

ପଣ୍ଡିତ ହରିହର ଜାତି ଗଠନ ପାଇଁ ଦେଶର ଉଦୀୟମାନ ବାଳକମାନଙ୍କୁ ଶିକ୍ଷା ବିଦ୍ୟାଦାନ କରୁଥିଲେ । ଭକ୍ତକବି ମଧୁସୂଦନ୍ ତାଙ୍କ ଜୀବନର ପ୍ରଥମ ପ୍ରେରଣା ହରିହରଙ୍କଠାରୁ ପାଇଥିଲେ । ହରିହରଙ୍କ ପୁରୀ ଘର ଥିଲା କୁଣ୍ଡାଇ ବେଣ୍ଟ ସାହିରେ । ମଧୁସୂଦନ ହେଉଛନ୍ତି ସେହି କୁଣ୍ଡାଇବେଣ୍ଟ ସାହି ପାଖ ଯଥୁରିଆ ସାହି ନିବାସୀ । ସେକାଳର କନେଷ୍ଟବଳ ଶ୍ରୀ ଭଗୀରଥି ସିଂହଙ୍କର ସେ ଜ୍ୟେଷ୍ଠପୁତ୍ର ଥିଲେ । ଅତି ଅଳ୍ପ ବୟସରୁ ସେ ହରିହରଙ୍କ ସମ୍ପର୍କରେ ଆସିଥିଲେ । ମଧୁସୂଦନଙ୍କ ଜୀବନରେ ଯେଉଁ ନିଷ୍ଠା ଓ ସଂସ୍କାରପ୍ରବଣତା ପ୍ରକାଶ ପାଇଥିଲା, ଏତିକି ବେଳେ ତାହାର ମୂଳଦୁଆ ପଡ଼ିଥିଲା ।

Digitized by PPRACHIN, SOA

## ୫୭ । ହରିହରଙ୍କ ସମ୍ବନ୍ଧରେ ଅପପ୍ରଚାର :

ଭକ୍ତକବି ମଧୁସୂଦନ ବଙ୍ଗବାସୀ ବନ୍ଧୁ ଓ ଶିକ୍ଷକଙ୍କ ପ୍ରଭାବରେ ପ୍ରଭାବିତ ହୋଇ ନ'ଅଙ୍କ ଦୁର୍ଭିକ୍ଷ ପରେ ପରେ ବୋଧହୁଏ ୧୮୬୮ରେ ବ୍ରାହ୍ମଧର୍ମ ଗ୍ରହଣ କରିଥିଲେ ।

ଓଡ଼ିଶାରେ ବ୍ରାହ୍ମଧର୍ମର ଚେଉ ବୋହିବା ସଙ୍ଗେ ସଙ୍ଗେ ବ୍ରାହ୍ମ ସମାଜରେ ମଧ୍ୟ ଦୁଇଟି ପରସ୍ପରବିରୋଧୀ ଦଳର ସୃଷ୍ଟି ହୋଇଥିଲା । ହରିହର ବ୍ରାହ୍ମଧର୍ମ ଗ୍ରହଣ ନକରିବାରୁ ସେହି ବ୍ରାହ୍ମ ସମାଜର ଉଗ୍ରପନ୍ଥୀ ଦଳଟିର ଚକ୍ଷୁଶୂଳ ହୋଇଥିଲେ ।

ସେହିଭଳି ବ୍ରାହ୍ମମାନଙ୍କ ଗୁପ୍ତ ଷଡ଼ଯନ୍ତ୍ର ଓ ତତ୍କାଳୀନ କୁସଂସ୍କାରଗ୍ରସ୍ତ ସମାଜପତିମାନଙ୍କ ଅପପ୍ରଚାର, ଦୁଇଟିଯାକକୁ ହରିହରଙ୍କୁ ସାମନା କରିବାକୁ ପଡ଼ିଥିଲା । ବିଶେଷରେ ସେହି ବ୍ରାହ୍ମମାନଙ୍କ ଅପପ୍ରଚାରରେ ବ୍ରାହ୍ମ କବି ମଧୁସୂଦନ ରାଓଙ୍କ ଭଳି ସାଧୁବ୍ୟକ୍ତି ମଧ୍ୟ ହରିହରଙ୍କ ବିରୁଦ୍ଧରେ ପ୍ରଭାବିତ ହୋଇ ପଡ଼ିଥିଲେ ।

## ୫୮ । ମଧୁସୂଦନଙ୍କ ମତ ପରିବର୍ତ୍ତନ :

ଭକ୍ତକବି ମଧୁସୂଦନ ନିଜର ବାଲ୍ୟକାଳରୁ ପଣ୍ଡିତ ହରିହରଙ୍କ ସମ୍ପର୍କରେ ଆସି ତାଙ୍କୁ ଜ୍ଞାନଦାତା ବୋଲି ମୂଳରୁ ସମ୍ମାନ ପ୍ରଦର୍ଶନ କରୁଥିଲେ । କିନ୍ତୁ ପରବର୍ତ୍ତୀକାଳରେ ବ୍ରାହ୍ମଧର୍ମ ଗ୍ରହଣ କରି, ହରିହରଙ୍କ ପ୍ରତି ଅସନ୍ତୁଷ୍ଟ ହୋଇ ପଡ଼ିଥିବା ପରି ମନେହୁଏ ।

ମଧୁସୂଦନ ଗ୍ରନ୍ଥାବଳୀରୁ ଜଣାଯାଏ ପଣ୍ଡିତ ହରିହରଙ୍କୁ ଜ୍ଞାନଦାତା କହି ମଧ୍ୟ ମଧୁସୂଦନ ହରିହରଙ୍କ ନାମରେ ନାସ୍ତିକ ବୋଲି ଏକ ଆକ୍ଷେପମୂଳକ ଲେଖା ପ୍ରକାଶ କରିଥିଲେ ।

ସେପରି ସେଉଁ ଲେଖା ଭକ୍ତକବି ମଧୁସୂଦନ ଗ୍ରନ୍ଥାବଳୀ, ୪ର୍ଥ ସଂସ୍କରଣର ଦଶ ପୃଷ୍ଠାରେ ସ୍ଥାନପାଇଛି ତାହା ହେଲା—"ମହାଜ୍ଞାନୀ ପଣ୍ଡିତ ହରିହର ଦାଶ" ।

## ୫୯ । ହରିହରଙ୍କ ପାଣ୍ଡିତ୍ୟ :

ସେ ସମୟରେ ହରିହର ଦାଶ ନାମକ ଜଣେ ସୁବିଖ୍ୟାତ ସଂସ୍କୃତଜ୍ଞ ଓ ବେଦାନ୍ତିକ ପଣ୍ଡିତ ଥାଆନ୍ତି । ଗୁଣଗ୍ରାହୀ ରାଧାନାଥ (କବିବର ରାଧାନାଥ ରାଏ)

Digitized by PPRACHIN, SOA

ମଧୁସୂଦନଙ୍କ ସହିତ ଉକ୍ତ ପଣ୍ଡିତ ମହୋଦୟଙ୍କ ନିକଟକୁ ପ୍ରତ୍ୟହ ଯାଇ 'ଦର୍ଶନ'ର ଚର୍ଚ୍ଚା କରୁଥିଲେ ଓ କଠିନ କଠିନ ସଂସ୍କୃତ ଶ୍ଳୋକମାନଙ୍କର ଅର୍ଥ ବୁଝୁଥିଲେ । ହରିହର ଦାଶ ଜଣେ ବଡ଼ ମନସ୍ୱୀ ପୁରୁଷ ଥିଲେ । ତାଙ୍କ ଅଗାଧ ପାଣ୍ଡିତ୍ୟର ଯେ ପରିଚୟ ପାଇଅଛି, ସଂସ୍କୃତ ଭାଷାରେ ତାଙ୍କର ତେଜସ୍ୱିତା-ବ୍ୟଞ୍ଜକ ଅନର୍ଗଳ ବକ୍ତୃତା ଯେ ଶୁଣି ପାରିଛି ସେ ଚମତ୍କୃତ ହୋଇଯାଇଅଛି ।

## ୬୦ । ହରିହରଙ୍କ ନାସ୍ତିକତା :

ତାଙ୍କର କୌଣସି ନିର୍ଦ୍ଦିଷ୍ଟ ମତବାଦ ନ ଥିଲା । ଖ୍ରୀଷ୍ଟାନ ସହିତ ଖ୍ରୀଷ୍ଟାନ, ମୁସଲମାନ ସହିତ ମୁସଲମାନ, ହିନ୍ଦୁ ସହିତ ହିନ୍ଦୁ ହୋଇ ସେ କୌଣସି ମତବାଦର ବଶବର୍ତ୍ତୀ ନଥିଲେ ଏବଂ ତାଙ୍କ ତର୍କ ପ୍ରଭାବରେ ଆସ୍ତିକ ମତ ଖଣ୍ଡନ କରି ସେ ସମ୍ପୂର୍ଣ୍ଣ ନାସ୍ତିକ ହୋଇପଡ଼ିଥିଲେ ।

## ୬୧ । ହରିହରଙ୍କ ଶିକ୍ଷାଦାନ :

ପୁରୀର ମାଜିଷ୍ଟ୍ରେଟ୍ ବକ୍‌ସୱେଲ ସାହେବ ତାଙ୍କର ପ୍ରରୋଚନାରେ ସଂସ୍କୃତ ଅଧ୍ୟୟନ କରି ସେ ଭାଷାରେ ବ୍ୟୁତ୍ପତ୍ତି ଲାଭ କରି ପାରିଥିଲେ ଏବଂ ମଧୁସୂଦନ ତାଙ୍କୁ ଜ୍ଞାନଦାତା ରୂପେ ସ୍ୱୀକାର କରିଥିଲେ ।

ମଧୁସୂଦନ ତାଙ୍କ 'ଶ୍ମଶାନ' କବିତାରେ—

"ମୃତ ଜ୍ଞାନଦାତା ପୁଣି ମୃତ ପରିଜନ ।
ନୟନ ଅଗ୍ରତେ ଯେହ୍ନେ ନାଚିଲେ ତକ୍ଷଣ ।"

ଏହି ପଂକ୍ତିରେ ମୃତ ଜ୍ଞାନଦାତା ବୋଲି ଏହି ପଣ୍ଡିତଙ୍କୁ (ହରିହରଙ୍କୁ) ଲକ୍ଷ୍ୟ କରାଯାଇଅଛି ।

## ୬୨ । ମଧୁସୂଦନଙ୍କ ଉପରେ ସଂକୀର୍ତ୍ତନର ପ୍ରଭାବ :

କିନ୍ତୁ (ମଧୁସୂଦନ ବ୍ରାହ୍ମଧର୍ମୀ ଭାବରେ) ପଣ୍ଡିତ ମହାଶୟଙ୍କ ନାସ୍ତିକତାକୁ ଆନ୍ତରିକ ଘୃଣା କରୁଥିଲେ । ନିଦର୍ଶନ ସ୍ୱରୂପ ସେ ଏକ ସ୍ଥାନରେ ଏହି ପଣ୍ଡିତଙ୍କୁ ଲକ୍ଷ୍ୟ କରି କହିଛନ୍ତି—

"ହେ ପଣ୍ଡିତ କ୍ଷୁଦ୍ରତର ବୁଦ୍ଧିମାନ ଦଣ୍ଡ
ଧରୁଅଛ ମାପିବ ହେ ଅନନ୍ତ ଅପାରେ

Digitized by PPRACHIN, SOA

ଷାଡ୍‌ଦର୍ଶନ କ୍ଷୁରଧାରେ ଖଣ୍ଡି ଶ ଅଖଣ୍ଡେ
ମାତିବା ହେ ଜୟେ ଲ୍ଲାସେ ବୌଦ୍ଧ ଅହଙ୍କାରେ
ଦୂରେ ଫିଙ୍ଗି ଅଭିମାନ, ପ୍ରମାଣ ପ୍ରମାଦ
ପଡ଼ି ଆସି ସେ ଅନନ୍ତ ମହାପଦ ତଳେ
ହେ, ଚତୁର ସୁଧୀ ଗୁଡ଼ ବହିର ସ୍ଥିତି
ଭୁଞ୍ଜ ମହାନନ୍ଦେ ମହା ବିଶ୍ୱାସ ମାଧୁରୀ ।"

## ୬୩ । ହରିହରଙ୍କ ଉଦ୍ଦେଶ୍ୟରେ ଉପଦେଶ :

(ସେହି ବହିରେ ଲେଖାଅଛି) ନିଜର ଯେ ଜ୍ଞାନଦାତା ତାଙ୍କୁ ଏପରି ଉପଦେଶ ଦେବାର ଅଧିକାର ମଧୁସୂଦନଙ୍କର ଅବଶ୍ୟ ଥିଲା, କାରଣ ନ୍ୟାୟ ଦର୍ଶନାଦିରେ ପଣ୍ଡିତ ମହୋଦୟ ମଧୁସୂଦନଙ୍କ ଗୁରୁ ହେଲେହେଁ, ଭକ୍ତି ବିଶ୍ୱାସ ପାଇଁ ମଧୁସୂଦନ ଥିଲେ ତାଙ୍କର ବହୁ ଊର୍ଦ୍ଧ୍ୱରେ । ପଣ୍ଡିତ ମହୋଦୟଙ୍କ ନାସ୍ତିକତା ମଧୁସୂଦନଙ୍କ ପ୍ରାଣରେ ଏତେଦୂର ବାଜିଥିଲା ଯେ, ପଣ୍ଡିତଙ୍କ ମୃତ୍ୟୁର ଅଳ୍ପକାଳ ପୂର୍ବେ ସେ ସ୍ୱପ୍ନରେ ଦେଖିଥିଲେ—

## ୬୪ । ଭକ୍ତକବିଙ୍କ ସଫଳ ସ୍ୱପ୍ନ

ପଣ୍ଡିତ ମହୋଦୟ ଏକ ଜ୍ୱଳନ୍ତ କାଷ୍ଠ ଫଳକ ସ୍କନ୍ଧରେ ଧରି ବ୍ୟାକୁଳ ଭାବରେ ବଡ଼ ଦାଣ୍ଡରେ (ପୁରୀ) ଧାବମାନ ହେଉ ଅଛନ୍ତି ଏବଂ ପାର୍ଶ୍ୱରେ ଯାହାକୁ ଦେଖୁଛନ୍ତି ତାହା ଉପରକୁ ଅଗ୍ନିଖଣ୍ଡ ନିକ୍ଷେପ କରୁଛନ୍ତି, କିନ୍ତୁ ଯେତେ ନିକ୍ଷେପ କଲେ ହେଁ ତାହା ସ୍କନ୍ଧ ଦେଶରୁ ଛାଡ଼ୁନାହିଁ, ଅଥଚ ପାର୍ଶ୍ୱବର୍ତ୍ତୀ ଲୋକମାନେ ଅଗ୍ନିରେ ଜଳି ଯାଉଛନ୍ତି ।

ଏପରି ଧାବମାନ ହୋଇ ପଣ୍ଡିତ ମହୋଦୟ ନରେନ୍ଦ୍ର ପୁଷ୍କରିଣୀରେ ନିମଗ୍ନ ହୋଇ ଶାନ୍ତି ଲାଭ କଲେ । ଏହି ସ୍ୱପ୍ନର ଅଳ୍ପଦିନ ପରେ ପଣ୍ଡିତ ମହୋଦୟ ସେପରି ଅଗ୍ନିଦଗ୍ଧ ହୋଇ ପ୍ରାଣ ହରାଇଲେ । × × ×

## ୬୫ । ସଂସ୍କୃତ ବିଦ୍ୟାଳୟର ସ୍ମରଣୀୟ ପ୍ରତିଷ୍ଠାତା :

ପଣ୍ଡିତ ମହୋଦୟଙ୍କର ମତ ଯାହା ହେଉ ତାଙ୍କର ଦାବି ମଧୁସୂଦନଙ୍କ ଜ୍ଞାନଚକ୍ଷୁ ସର୍ବାଦୌ ମାର୍ଜିତ ହୋଇଥିଲା । ପୁରୀ ସଂସ୍କୃତ ବିଦ୍ୟାଳୟର ପ୍ରଥମ ଉଦ୍ୟୋକ୍ତା ଓ ଭିତ୍ତିସ୍ଥାପକ ହୋଇ ପଣ୍ଡିତ ମହୋଦୟ ଉତ୍କଳର ଜନ

Digitized by PPRACHIN, SOA

ସାଧାରଣଙ୍କ ସ୍ମରଣୀୟ ହୋଇ ରହିଛନ୍ତି । ବଳରାମପୁର ରାଜାଙ୍କୁ ପ୍ରବର୍ତ୍ତାଇ ସେ ଏ କାର୍ଯ୍ୟଟି ସମ୍ପନ୍ନ କରିଥିଲେ । ଏହି ସ୍କୁଲ ଅ.ଜ କଲେଜରେ ପରିଣତ ହୋଇ-ପାରିଛି, ଏହା ବଡ଼ ଆନନ୍ଦର ବିଷୟ । ନାସ୍ତିକ ହେଲେ ହେଁ ପଣ୍ଡିତ ହରିହର ଏହି କୀର୍ତ୍ତି ବଳରେ ଅମର ହୋଇ ରହିଛନ୍ତି ।

( ମଧୁସୂଦନ ଗ୍ରନ୍ଥାବଳୀ, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, ୧୯୮୧ )

**୭୭ । ସହୃଦ ହରିହର :**

ଏହି ଲେଖାମାନଙ୍କରୁ ସେହି ଅନ୍ଧକାର ଯୁଗରେ ମଧ୍ଯ ପଣ୍ଡିତ ହରିହର କପରି ଦୂରଦୃଷ୍ଟିସମ୍ପନ୍ନ ମାନବବାଦୀ ମହାପୁରୁଷ ଥାଇ ଜାତି, ଧର୍ମ ନିର୍ବିଶେଷରେ ସମସ୍ତଙ୍କୁ ସମାନ ଚକ୍ଷୁରେ ଦେଖି ସେମାନଙ୍କ ସଙ୍ଗେ ମିଶି ସମସ୍ତଙ୍କୁ ସମ ବ୍ୟବହାର ପ୍ରଦର୍ଶନ କରୁଥିଲେ, ତାହା ଜଣା ପଡେ । ଏଥିପାଇଁ ସେ ରକ୍ଷଣଶୀଳ ସମାଜ ପକ୍ଷରୁ ବହୁ ନିର୍ଯ୍ୟାତନା ଓ ବାଧାବିଘ୍ନର ସମ୍ମୁଖୀନ ହେବା ସଙ୍ଗେ ସଙ୍ଗେ ସୁଶିକ୍ଷିତ ସଂସ୍କାରବାଦୀ ସମାଜ ପକ୍ଷରୁ ମଧ୍ଯ ନିନ୍ଦିତ ଓ ବୋଧହୁଏ ଘୃଣ୍ୟ ଷଡ଼ଯନ୍ତ୍ରର ଶୀକାର ହୋଇଥିଲେ ।

ହରିହର ପୂର୍ଣ୍ଣପ୍ରାଣରେ ଲଟିପଡ଼ି ମୁମୂର୍ଷୁ ଜାତିର ପ୍ରାଣରେ ଚେତନାର ଉନ୍ମେଷ କରାଇଲାବେଳେ ଏ ଜାତିର ଅଜ୍ଞାତରେ ସହୃଦ୍ ହୋଇଥିଲେ । ତାଙ୍କର କ୍ଷୁଦ୍ର ଜୀବନକାଳ ଭିତରୁ ସେ ମାତ୍ର ୭, ୮ ବର୍ଷ ଦେଶ ସେବାର ସୁଯୋଗ ପାଇଥିଲେ ମାତ୍ର; ଏକତିରିଶ ବର୍ଷ କେତେ ମାସରେ ତାଙ୍କୁ ଏ ଦୁର୍ଭାଗ୍ୟ ଦେଶ ଏପରି ଭାବରେ ହରାଇ ବହୁ କ୍ଷତିର ସମ୍ମୁଖୀନ ହେଲା; ତଥାପି ସେ ଏ ଜାତି ପାଇଁ ଶିକ୍ଷାର ଯେଉଁ ମୂଳଦୁଆ ପକାଇ ଦେଇ ଯାଇଥିଲେ ତାହାର ପ୍ରଭାବରେ ସତ୍ୟବାଦୀର ପଞ୍ଚସଖା ଏ ଦେଶକୁ ଉନ୍ନତ କରି ନୂତନ ମାର୍ଗ ଦେଖାଇ ପାରିଥିଲେ ।

**୭୭ । ହରିହରଙ୍କ ମୃତ୍ୟୁ ରହସ୍ୟ :**

ପୂର୍ବରୁ ହରିହରଙ୍କ ଗୁଣମୁଗ୍ଧ ଥିବା ଭକ୍ତକବି ମଧୁସୂଦନ ତାଙ୍କ ସମ୍ବନ୍ଧରେ ତାଙ୍କର ମୃତ୍ୟୁର ଅବ୍ୟବହିତ ପୂର୍ବରୁ ଏପରି ଏକ ସଫଳ ସ୍ୱପ୍ନ ଦେଖିବାରେ ନିଶ୍ଚୟ କିଛି ଗୂଢ଼ ରହସ୍ୟ ଲୁକ୍କାୟିତ ହୋଇ ରହିଛି । ମନସ୍ତାତ୍ତ୍ୱିକ ମତରେ ମନଭିତରେ ଲୁଚାଇ ରଖିବାକୁ ଚେଷ୍ଟା କରୁଥିବା ବା ହଜାଇ ଦେଇଥିବା ବିକ୍ଷିପ୍ତ ପ୍ରୀତିକର ଭାବନାଗୁଡ଼ିକ ଅନେକ ସ୍ଥଳରେ ସ୍ୱପ୍ନରେ ରୂପାୟିତ ହୋଇ ଦେଖା ଦିଅନ୍ତି ।

Digitized by PPRACHIN, SOA

ତେଣୁ ପଣ୍ଡିତ ପ୍ରବରଙ୍କ ଶରୀରରେ ଅଗ୍ନି ସଂଯୋଗ ଓ ମୃତ୍ୟୁ ପୂର୍ବରୁ ବ୍ରାହ୍ମଙ୍କର ସେଥିର ଏକ ଗୁପ୍ତ ଯୋଜନାର କିଛି ସଂକ୍ଷିପ୍ତ ବିବରଣୀ ବା ଆଭାଷ ପାଇଥିବା ସମ୍ଭବ । ତାହା ପାଇ ହରିହରଙ୍କୁ ଘୃଣାକରୁଥିବାରୁ ହୁଏତ ନୀରବ ରହିଥିଲେ । ସେ ସମୟରେ ବାହ୍ମଣମାନେ ବିଭିନ୍ନ ଦଳରେ ପରିଣତ ହୋଇଥିଲେ । ସେମାନଙ୍କ ଭିତରୁ ଉଗ୍ର ଦଳ ଏପରି ଏକ ଯୋଜନାରେ ଲିପ୍ତ ଥିବାବେଳେ ଅନ୍ୟ ଏକ ଦଳଭୁକ୍ତ ସାଧୁ ଭକ୍ତଜନ ସେପରି ଯୋଜନାର ହୁଏତ କେଉଁଠାରୁ କ୍ଷୀଣ ଆଭାସ ପାଇଥିଲେ । ତା ନ ହୋଇଥିଲେ ହରିହର କଲିକତାରୁ ଫେରି କଟକରେ ରୋଗ ଭୋଗ କରୁଥିବା ସମୟରେ ଭକ୍ତକବି ନିଜର ଜ୍ଞାନଦାତାଙ୍କ ପ୍ରତି ଅନ୍ୟ ଗୁଣୀଜନମାନଙ୍କ ପରି ସହାନୁଭୂତି ଜଣାଇବା ଦୂରେ ଥାଉ ତାଙ୍କର ଅମଙ୍ଗଳ ସୂଚନା ପ୍ରଦାନ କାମନା କରୁଥିବା ସେହି ଦୁଃସ୍ୱପ୍ନ ଦେଖିଲେ କିପରି !

ସେତେବେଳର ଖବର କାଗଜ ମାନଙ୍କରୁ ଜଣାପଡେ, ହରିହର କଟକରେ ରହି ଆରୋଗ୍ୟ ଲାଭ ଆଡକୁ ଗତି କରୁଥିଲେ । କଟକରୁ ଯାଇ ପୁରୀରେ ପହଞ୍ଚିବା ସଙ୍ଗେ ସଙ୍ଗେ ମୁକ୍ତରୁ ପାଗଳ ହେଲେ, ତାପରେ ପୋଷାକରେ ଅଗ୍ନି ସଂଯୋଗ ଯୋଗୁ ମୃତ୍ୟୁ ବରଣ କଲେ । ଏହି ଘଟଣା ଘଟିବାର ଏକଶତବର୍ଷ ବର୍ଷରୁ ଊର୍ଦ୍ଧ୍ୱ ହୋଇଗଲାଣି, କିନ୍ତୁ ତାଙ୍କ ବିପର୍ଯ୍ୟୟର ରହସ୍ୟ ଏ ପର୍ଯ୍ୟନ୍ତ ଉଦ୍‌ଘାଟିତ ହୋଇନାହିଁ ।

## ୬୭ । ତତ୍‌କାଳୀନ ବଙ୍ଗବାସୀଙ୍କ ଆମୋଦ ନଗରୀ ପୁରୀ :

ସେ ସମୟରେ ବହୁ ବଙ୍ଗବାସୀ ଚିତ୍ତବିନୋଦନ ପାଇଁ ପୁରୀ ଆସୁଥିଲେ । ସମୁଦ୍ର କୂଳ ଓ ଆଖପାଖ ଅଞ୍ଚଳରେ ସେମାନେ ବହୁ କୋଠାଘର ତିଆରି କରି ରହୁଥିଲେ । ସେତେବେଳେ ବଙ୍ଗଳାରେ ସଭ୍ୟସମାଜରେ ବ୍ରାହ୍ମଧର୍ମ ଆଧିପତ୍ୟ ବିସ୍ତାର କରିଥିବାରୁ ପୁରୀ ମଧ୍ୟ ବ୍ରାହ୍ମବାଦୀମାନଙ୍କର ଏକ ଲୀଳାସ୍ଥଳୀ ଥିଲା ।

'ଉତ୍କଳ ଦୀପିକା'ରେ ଅଗ୍ନିସଂଯୋଗ ଦ୍ୱାରା ହରିହରଙ୍କର ସମସ୍ତ ପିଠି, ଦୁଇପାଦର ଅଧିକାଂଶ ଅଂଶ ଓ ହାତ ଦୁଇଟି ପୋଡ଼ି ଯିବାର ସମ୍ବାଦ ପ୍ରକାଶିତ ହୋଇଥିଲା । ଅଜାଣତରେ ଏକ ସ୍ଥାନରେ ନିଆଁ ଲାଗି ଏକାବେଳରେ ସେପରି ଅଲଗା ଅଲଗା ସ୍ଥାନ ପୋଡ଼ିବ କିପରି ? ଲୁଗା ନ ଥିବା ପାଦ ଦୁଇଟା ବା ସେପରି ପୋଡ଼ିଲା କାହିଁକି ?

Digitized by PPRACHIN, SOA

ଉଲ୍‌ଷ୍ଟବଙ୍କ ନିଜଲୋକ ଡାକ୍ତର ବନମାଳୀ ସିଂହଙ୍କ ତତ୍ତ୍ୱାବଧାନରେ ହରିହର ରହିଥିଲେ । ସେତେବେଳେ ହୁଏତ ମୃତ୍ୟୁ ପରେ ପୋଷ୍ଟମର୍ଟମ ବ୍ୟବସ୍ଥା ନଥିଲା । ତଥାପି ଡାକ୍ତର ସେପରି ଘୋଡ଼ା କ୍ଷତସବୁ ଦେଖି ସନ୍ଦେହ ପ୍ରକାଶ କରି ପାରିଥାଆନ୍ତେ । ଅନ୍ୟମାନଙ୍କୁ ଜଣାଇଥାଆନ୍ତେ; କିନ୍ତୁ ସେ ସେପରି କିଛି କରି ନ ଥିଲେ । ଏସବୁ ଦୃଷ୍ଟିରୁ ହରିହରଙ୍କ ଆଚଜାମାନେ କଲିକତାରୁ ଅସି ସ୍ଥାନୀୟ ଲୋକଙ୍କ ସାହଚର୍ଯ୍ୟରେ କୌଶଳରେ ତାଙ୍କୁ ସେପରି ଭାବରେ ହତ୍ୟା କରିଥିବାର ସମ୍ଭାବନା ଏଡ଼ାଇ ଦିଆଯାଇ ପାରିବ ନାହିଁ ।

## ୭୯ । ଆନ୍ଦୋଳନର ଅଭାବ ଓ ପୂଜ୍ୟପୂଜା ବ୍ୟତିକ୍ରମ :

ହରିହରଙ୍କ ମୃତ୍ୟୁରେ ଅନୁସନ୍ଧାନ ବା ଆନ୍ଦୋଳନ କରିବା ପାଇଁ ଦୁର୍ଭିକ୍ଷରେ ମେରୁଦଣ୍ଡ ଭାଙ୍ଗି ଯାଇଥିବା ଓଡ଼ିଆ ଜାତିର ଶକ୍ତି ନଥିଲା ।

ପରେ ହରିହରଙ୍କ ସ୍ମୃତିରକ୍ଷା ପାଇଁ ଏ ଜାତି ମଧ୍ୟ କୌଣସି ଯତ୍ନ କରି ନ ଥିଲା । ତାଙ୍କର ପ୍ରିୟ ଅନୁଷ୍ଠାନ, ଯାହାପାଇଁ ସେ ପ୍ରାଣପାତ କରିଗଲେ ଏପର୍ଯ୍ୟନ୍ତ ସେଥିରେ ତାଙ୍କର ନାମ ଗନ୍ଧ ମଧ୍ୟ ନାହିଁ । ତାଙ୍କର ସ୍କୁଲଟି ତାଙ୍କ ଇପ୍‌ସିତ କଲେଜରେ ପରିଣତ ହେଲା । କିନ୍ତୁ ଜଣେ ରକ୍ଷଣଶୀଳ ପଣ୍ଡିତଙ୍କ ନାମରେ ତାହା ନାମିତ ହେଲା । ହରିହରଙ୍କ ସମାଜସଂସ୍କାର ଓ ଉଚ୍ଚ ଭିଳାଷକୁ କୌଣସି ସମ୍ମାନ ଦିଆଗଲା ନାହିଁ ।

ବର୍ତ୍ତମାନ ତାଙ୍କ କଳ୍ପିତ ସଂସ୍କୃତ ବିଶ୍ୱବିଦ୍ୟାଳୟ ସ୍ଥାପିତ ହୋଇ-ଥିଲେ ମଧ୍ୟ ତାଙ୍କର ପ୍ରତିଭାକୁ ଏପର୍ଯ୍ୟନ୍ତ ସମ୍ମାନ ଦେଖାଯାଇ ନ ଥିବା ଏ ଜାତି ପକ୍ଷରେ ଏକ ଦୁର୍ଭାଗ୍ୟର ବିଷୟ ଏବଂ ଏ ଜାତି ପକ୍ଷରେ ପୂଜ୍ୟପୂଜାର ଏହା ଏକ ବିରାଟ ବ୍ୟତିକ୍ରମ ।

## ୭୦ । ଏବର ଭାବନା :

ସେ କାଳର ସମ ଜଠତି ଓ ମଧୁସୂଦନ ରାଓଙ୍କ ପରି ପ୍ରତିଷ୍ଠିତ ବ୍ୟକ୍ତି-ମାନେ ଗାବର୍ଣ୍ଣ ଥିଲ, ଯଦି ସ୍ୱାଧୀନ ଭାରତରେ ଆଜିର ଜାତିଧର୍ମନିରପେକ୍ଷ ସମାଜ ନୀତିର ପ୍ରଚଳନକୁ ଦେଖି ପାରି ଥାଆନ୍ତେ, ତେବେ ତତ୍କାଳୀନ ତାଙ୍କ ତଥାକଥିତ ଭକ୍ତକ କାମଳ ଚକ୍ଷୁରେ ଯାହା ଦେଖୁଥିଲେ ତାହା କପରି ଅବାସ୍ତବ ଓ ପଣ୍ଡିତ ହରିହରଙ୍କ ଆଦର୍ଶ ଓ ଦୂରଦୃଷ୍ଟି କପରି ବାସ୍ତବ ତାହା ଉପଲବ୍ଧି

Digitized by PPRACHIN, SOA

କରି ପାରିଥାଆନ୍ତେ । ଆଜ ତା'ର ପରମ ସତ୍ୟ ଉଦ୍‌ଘାଟିତ ହୋଇ ହରିହରଙ୍କ ପ୍ରତିଭା ଆଉ କାଳର ଆବର୍ତ୍ତନରେ ଲୁଚି ରହି ପାରିନଥାନ୍ତା ।

## ୭୧ । ହରିହରଙ୍କ ତ୍ୟାଗପୂତ, ଉତ୍ସର୍ଗୀତ ଜୀବନ :

ଆଗରୁ କୁହାଯାଇଛି, ତିରୋଧାନ ସମୟକୁ ହରିହରଙ୍କୁ ୩୧ ବର୍ଷ ପୂରି ମାତ୍ର ୩୨ ବର୍ଷ ଚାଲୁଥିଲା । ୧୪ ବର୍ଷରୁ ଆରମ୍ଭ କରି ୮।୧୦ ବର୍ଷ ବିଦ୍ୟାଧ୍ୟୟନ ପରେ ସେ ଦେଶ କାର୍ଯ୍ୟ କରିବା ପାଇଁ ମାତ୍ର ସାତ ଆଠ ବର୍ଷ ପାଇଥିଲେ । ସେ ତାଙ୍କ ଜୀବନକାଳ ଭିତରେ ନିଜର ସମସ୍ତ ସୁଖ ସ୍ୱାଚ୍ଛନ୍ଦ୍ୟକୁ ସଂପୂର୍ଣ୍ଣ ରୂପେ ଜଳାଞ୍ଜଳି ଦେଇ ନିଜର ସ୍ୱାର୍ଥ ଓ ପରିବାର ପ୍ରତି ଭ୍ରୂକ୍ଷେପ ନ କରି ଦେଶସେବାରେ ବ୍ରତୀ ହୋଇଥିଲେ । ରାଜ୍ୟରେ ଶିକ୍ଷାର ପ୍ରସାର କରି ରାଜ୍ୟ-ଲୋକଙ୍କ ଜୀବନ ଧାରଣର ମାନର ଉନ୍ନତି କଲେ ହିଁ ବାସ୍ତବ ଅର୍ଥରେ ଭାବିବରେ ଲାଗିପଡ଼ିଥିଲେ । ସମାଜ ଚେତନାର ଉନ୍ମେଷ ପାଇଁ କୁସଂସ୍କାରକୁ ଦୂରୀଭୂତ କରିବା ସଙ୍ଗେ ସଙ୍ଗେ ବୁଭୁକ୍ଷିତଙ୍କ ପାଇଁ ଅନ୍ନ ଓ ମ୍ରିୟମାଣ ସମାଜ ପାଇଁ ଉପଯୁକ୍ତ ଶିକ୍ଷା ଯୋଗାଇବାକୁ ଉଦ୍ୟମ କରିବାରେ ସେ ନିଜକୁ ସଂପୂର୍ଣ୍ଣ ରୂପେ ଉତ୍ସର୍ଗ କରିଥିଲେ ।

## ୭୨ । ହୀରକର ଜ୍ୟୋତି ଚିର ଜୀବନ୍ତ :

ହୀରା ଖଣ୍ଡକୁ ଭୂପୃଷ୍ଠରେ ପୋତି ରଖିଲେ ମଧ୍ୟ ସେ ଗୋପନରେ ତା'ର ଜ୍ୟୋତି ବିକିରଣ କରି ଚାଲିଥାଏ । ଆତ୍ମ ଶିକ୍ଷାବିତ୍, ଯୁଗଜ୍ୟୋତି ହରିହରଙ୍କର ସେପରି ତମସାଚ୍ଛାଦିତ ତିରୋଧାନ ପରେ ମଧ୍ୟ ତାଙ୍କ କାର୍ଯ୍ୟର ପରମ୍ପରା ଓ ଆଦର୍ଶ ଲଭି ଯାଇନଥିଲା ।

ହରିହର ଜାଳିଥିବା ସ୍ୱଦେଶପ୍ରୀତିର ଅଗ୍ନି ଭିତରେ ଭିତରେ କୁହୁଳୁ-ଥିଲା । ତାଙ୍କ ଆଦର୍ଶରେ ଅନୁପ୍ରାଣିତ ଦେଶପ୍ରାଣ ମୁକ୍ତାର ରାମଚନ୍ଦ୍ର ଦାସ ହରିହରଙ୍କ ଉପଯୁକ୍ତ ଦାୟାଦଙ୍କୁ ଖୋଜି ଖୋଜି ସତ୍ୟବାଦୀର 'ପଞ୍ଚସଖା'ଙ୍କୁ ଶିଷ୍ୟ ଭାବରେ ପାଇଥିଲେ । ସେ ସେମାନଙ୍କୁ ମୂଳରୁ ପଣ୍ଡିତ ହରିହରଙ୍କ ଆଦର୍ଶ ଓ ପନ୍ଥା ଅନୁସରଣରେ ଗଢ଼ିବାକୁ ଯାଇ ସେମାନଙ୍କ ମନରେ ଉଗ୍ର ଜାତୀୟ ଚେତନା ଜାଗ୍ରତ କରିଥିଲେ ।

Digitized by PPRACHIN, SOA

## ୭୩ । ରାମଚନ୍ଦ୍ର ଦାସଙ୍କ ଉଦ୍ୟମ ଓ ପ୍ରେରଣା :

ଇଂରେଜ ଶାସନ ଅମଳରେ ପୁରୀ ନିକଟରେ ପୂର୍ବରୁ ସଂସ୍କୃତିର ପୀଠ ଥିବା ଗ୍ରାମମାନଙ୍କର ଅଧିବାସୀମାନେ ନିଃସ୍ୱ ହୋଇ ପଡ଼ିଥିଲେ । ସେ ଗ୍ରାମମାନଙ୍କରେ କୁସଂସ୍କାର ହୁତ୍ ହୁତ୍ ହୋଇ ମାଡ଼ିପାଇଥିଲା । ସେଠାର ଲୋକମାନଙ୍କର ଉଚ୍ଚଶିକ୍ଷା ପାଇଁ ଗ୍ରାମ ବାହାରକୁ ଯିବାର ଆର୍ଥିକ ସମ୍ବଳ ନଥିଲା । ସେହି ଗ୍ରାମମାନଙ୍କର ମେଧାବୀ ଛାତ୍ରମାନେ ଗ୍ରାମ୍ୟ ସ୍କୁଲରୁ ବୃତ୍ତି ପାଇ, ପୁରୀ ଆସି, ସେଠାରେ ରହି ବିଦ୍ୟାଧ୍ୟୟନ ପାଇଁ ଚେଷ୍ଟା କରୁଥିଲେ ।

ରାମଚନ୍ଦ୍ର ସେ କାଳରେ ଇଂରେଜୀ ନ ପଢ଼ି ମୁକ୍ତାରି କରୁଥିଲେ । ନିଜ ନିଜର ସ୍ୱଳ୍ପ ଆୟରୁ ସେହି ଛାତ୍ରମାନଙ୍କୁ ସାହାଯ୍ୟ କରିବାକୁ ଆଗେଇ ଆସୁଥିଲେ । ସେମାନଙ୍କ ପାଇଁ ନିଜେ ଜାଗା କିଣି ସେ ଏକ ଛାତ୍ରାବାସର ମୂଳଦୁଆ ପକାଇଥିଲେ । ଆଖପାଖରେ ବହୁ ବ୍ରାହ୍ମଣ ଶାସନ ରହିଥିଲା । ତେଣୁ ସେ ଛାତ୍ରାବାସରେ ବହୁ ବ୍ରାହ୍ମଣ ବାଳକ ରହୁଥିବାରୁ ତାର ନାମ ବ୍ରାହ୍ମଣ ସମିତି ଛାତ୍ରାବାସ ନାମରେ ନାମିତ ହୋଇଥିଲା । ପରବର୍ତ୍ତୀ କାଳରେ ପୁରୀର ଦେଶପ୍ରେମୀ ଜଗବନ୍ଧୁ ସିଂହ ଓ କଟକର ସ୍ୱନାମଧନ୍ୟ ବଙ୍ଗ ଅଧ୍ୟାପକ ଶ୍ରୀ ବିପିନ ବିହାରୀ ରାଏ ତାର ପୃଷ୍ଠପୋଷକତା କରି ସେ ଅନୁଷ୍ଠାନକୁ ବଞ୍ଚାଇ ରଖିଥିଲେ । ରାମଚନ୍ଦ୍ର ସେପରି ଛାତ୍ରମାନଙ୍କ ସହିତ ସବୁଦିନ ସାହିତ୍ୟ, ରାଜନୀତି ଓ ଦେଶର ଭବିଷ୍ୟତ ସମ୍ପର୍କରେ ଆଲୋଚନା କରୁଥିଲେ । ପଣ୍ଡିତ ନୀଳକଣ୍ଠଙ୍କ ଉକ୍ତି ଅନୁସାରେ ରାମଚନ୍ଦ୍ରଙ୍କର ଏପରି ଆକର୍ଷଣ ଶକ୍ତି ଥିଲା ଯେ, ଉଦୀୟମାନ ଛାତ୍ରମାନେ ସ୍କୁଲ ପଢ଼ା ସାରି ବସାକୁ ଫେରିବା ସଙ୍ଗେ ସଙ୍ଗେ ସେମାନଙ୍କ ଗୋଡ଼ ଆପେ ଆପେ ଯାଇ ଆନନ୍ଦଲହରୀ ନାମକ ଗୃହରେ ବସିଥିବା ରାମଚନ୍ଦ୍ରଙ୍କ ଦୁଆରେ ପହଞ୍ଚି ଯାଉଥିଲା । ହରିହରଙ୍କ ଆଦର୍ଶରେ ତାଲିମ ପାଉଥିବା ବାଳକମାନଙ୍କ ଭିତରେ (ଉତ୍କଳମଣି) ଗୋପବନ୍ଧୁ ପ୍ରଥମ ଥିଲେ । ଗୋପବନ୍ଧୁ ମୁକ୍ତାର ରାମଚନ୍ଦ୍ରଙ୍କୁ ନିଜର ଶ୍ରେଷ୍ଠ ଗୁରୁର ଆସନ ଦେଉଥିଲେ । ତାଙ୍କଠାରୁ ପଣ୍ଡିତ ହରିହରଙ୍କ ତ୍ୟାଗପୂତ ଜୀବନାଦର୍ଶ, ପାଣ୍ଡିତ୍ୟ ଓ କର୍ମମୟ ଜୀବନ କଥା ଶୁଣିବା ବେଳେ ତାଙ୍କ ଲୋମ ଟାଙ୍କୁରି ଉଠୁଥିଲା । ଗୋପବନ୍ଧୁ ହରିହରଙ୍କୁ ଦେଖିନଥିଲେ ମଧ୍ୟ ତାଙ୍କୁ ମାନସଗୁରୁ ରୂପେ ଗ୍ରହଣ କରିଥିଲେ । ପଣ୍ଡିତ ନୀଳକଣ୍ଠ, ଆଚାର୍ଯ୍ୟ ହରିହର ଓ ପ୍ରଖ୍ୟାତ ଅନନ୍ତ ମିଶ୍ର ପ୍ରଭୃତି ସେମାନଙ୍କ ଛାତ୍ରାବସ୍ଥାରୁ ରାମଚନ୍ଦ୍ରଙ୍କ ସଂପର୍କରେ ଆସିଥିଲେ ।

Digitized by PPRACHIN, SOA

ରାମଚନ୍ଦ୍ର ସେ ସମସ୍ତଙ୍କୁ ଜାଣିପୁ ସାର ରୂପେ ଗଡ଼ି ହରିହରଙ୍କ ଉଦ୍ଦେଶ୍ୟକୁ ସଫଳ କରିବା ପାଇଁ ଆପ୍ରାଣ ଚେଷ୍ଟା କରିଥିଲେ ।

## ୭୪ । ଗୋପବନ୍ଧୁଙ୍କ ମାନସଗୁରୁ ହରିହର :

ପଣ୍ଡିତ ହରିହରଙ୍କ ତିରୋଧାନ ୧୮୭୪ ଫେବୃୟାରୀରେ ଘଟିଥିଲା । ଗୋପବନ୍ଧୁ ତାର ପ୍ରାୟ ଦୁଇବର୍ଷ ପରେ ଅକ୍ଟୋବର ୧୮୭୭ ମସିହାରେ ଜନ୍ମ ଗ୍ରହଣ କରିଥିଲେ; କିନ୍ତୁ ମାଧ୍ୟାକର୍ଷଣ ଶକ୍ତିର ଆକର୍ଷଣ ପରି ହରିହରଙ୍କ ବ୍ୟକ୍ତିତ୍ୱର ପ୍ରଭାବ ଗୋପବନ୍ଧୁଙ୍କ ପ୍ରାଣକୁ ଅତ୍ୟନ୍ତ ଆକର୍ଷିତ କରିଥିଲା । ଏକା ଗୋତ୍ରର ରକ୍ତ ସମ୍ପର୍କ ଥାଏ ବୋଲି କୁହାଯାଏ । ସେଥିପାଇଁ ଆମ ସମାଜରେ ସମଗୋତ୍ରୀ ବିବାହ ବାରଣ ଥିଲା । ହରିହର ଥିଲେ ଶାସନୀ ବେଦାଚାର୍ଯ୍ୟକ ବ୍ରାହ୍ମଣ ବଂଶର ଦାୟାଦ । ଗୋପବନ୍ଧୁ କରିବାଡ଼ିର ବୈଷ୍ଣବ ବ୍ରାହ୍ମଣ କୁଳରେ ଜନ୍ମ-ଗ୍ରହଣ କରିଥିଲେ । କିନ୍ତୁ ଦୁହେଁ ଥିଲେ କୌଶିକ ଗୋତ୍ରୀୟ । ଦୁହିଁଙ୍କ ଧମନୀରେ ଯେପରିକି ଏକ ପ୍ରକାର ଦେଶପ୍ରେମର ତେଉ ଉଠୁଥିଲା ।

ଛାତ୍ରାବସ୍ଥାରୁ ଗୋପବନ୍ଧୁ ପଣ୍ଡିତ ହରିହରଙ୍କୁ ଝୁରି ହେଉଥିଲେ । ଓଡ଼ିଶାରେ ନବ ଯୁଗର ପ୍ରବର୍ତ୍ତା, ଅପୂର୍ବ ସାହସୀ, ସ୍ୱଦେଶହିତୈଷୀ, ସଂସ୍କାରକ, ମହାନ ପଣ୍ଡିତ ଓ ବଶିଷ୍ଟ ଶିକ୍ଷାବିତ ରୂପେ ହରିହର ସଦା ସର୍ବଦା ଗୋପବନ୍ଧୁଙ୍କ ଆଖି ଆଗରେ ନାଚୁଥିଲେ । ହରିହରଙ୍କୁ ସ୍ମରଣ କରି ଗୋପବନ୍ଧୁ ନିମ୍ନଲିଖିତ କବିତାଟି ଲେଖିଥିଲେ—

### ସ୍ୱର୍ଗୀୟ ପଣ୍ଡିତ ହରିହର ଦାସ ଶର୍ମା

ଆହେ ହରିହର ! ସୁଯୋଗ୍ୟ ଇତର
ଥିଲ ଉତ୍କଳ ମାତାର
କି ମଙ୍ଗଳକ୍ଷଣେ ଉତ୍କଳ ଭୁବନେ
ହେଲ ତୁମ୍ଭେ ଅବତାର
ସମାଜ ଦୁର୍ଗତି ସମ୍ପୂର୍ଣ୍ଣ ଶକ୍ତି
ବୁଝି ଥିଲ ତୁମେ ଏକା
ସଂସ୍କାର ବାସନା ସାଧୁ ପ୍ରାଣେ ଯିନା
ତେଣୁ ଦେଇଥିଲ ଦେଖା

Digitized by PPRACHIN, SOA

କେତେ ଉଚ୍ଚ ଭାବ ଲଭିଥିଲ ଠାବ
ତୁମ୍ଭ ଉଦାର ହୃଦୟେ
କି କଲ୍ପ ଦଇବ କେ ତା' ସମ୍ଭବ
ଗୁଲିଗଲ ଅସମୟେ ।
ମୂକ ହୋଇ କରି ଆଜି ଯାଏ ହରି
ଯେବେ ରହିଥାନ୍ତ ବଞ୍ଚି
ଓଡ଼ିଆଙ୍କ ହାତେ ଦେଇଥାନ୍ତ ସତେ
ଉନ୍ନତି ଭଣ୍ଡାର କଞ୍ଚି
ନବ୍ୟ ପୁରାତନ ରୁଚି ସମ୍ମିଳନ
କରିବ ଏବେ କିଏସେ
ଉତ୍ସାହ ଉଦ୍ୟମ ସାହସ ଅଦମ୍ୟ
କାହିଁ ଏ ଉତ୍କଳ ଦେଶେ ।

ଯାଞ୍ଚି ଥିଲ ମନେ ତେଜିବେ ବ୍ରାହ୍ମଣେ
ଯେବେ ଚିର କୁସଂସ୍କାର
ଅନ୍ୟ ଯେତେ ଜାତି ଉଠିବେ ଝଟତି
ହେବ ଉନ୍ନତି ପ୍ରଚୁର
ହାଦାରୁଣ କାଳ କିନ୍ତୁ ଏ ସକଳ
ସହି ନ ପାରିଲ କ୍ଷଣେ
ବନଫୁଲ୍ ପରି ଅଚିରେ ବିକଶି
ଝାଉଁଳି ପଡ଼ିଲ ବଣେ ।
କିଶୋର ବୟସେ କେତେ ସ୍ୱାର୍ଥ ତ୍ୟାଗ
କରିଥିଲ ଦେଶ ହିତେ ।
ଏବେ ଦେଶ ଦଶା ଆହେ କ୍ଷଣଜନ୍ମା
ନ ପଡ଼େ କି ଦିବ୍ୟ ଚିତ୍ତେ ।
ଉତ୍କଳ ମଣ୍ଡଳେ ନବ୍ୟ ସଭ୍ୟ ଦଳେ
ସର୍ବେ ଆଜି ସ୍ୱାର୍ଥପର
ଆସ ହରିହର ପଣ୍ଡିତ ପ୍ରବର
ସମାଜ ସଂସ୍କାର କର ।

Digitized by PPRACHIN, SOA

(ପଣ୍ଡିତ ଗୋପବନ୍ଧୁଙ୍କ ଲିଖିତ 'ଅବକାଶ ଚିନ୍ତା' ପୁନଃ ପ୍ରକାଶନ, ୧୯୭୮ ଷଷ୍ଠ ସଂସ୍କରଣ ୨୫ ପୃଷ୍ଠା ।)

## ୭୫ । ପଣ୍ଡିତ ନୀଳକଣ୍ଠଙ୍କଦ୍ୱାରା ହରିହରଙ୍କ ସ୍ମୃତି ଚାରଣ :

ପୁରୀ ସଂସ୍କୃତ କଲେଜରେ ପଣ୍ଡିତ ହରିହରଙ୍କ ସ୍ମୃତିଚାରଣ କରିବାକୁ ଯାଇ ପଣ୍ଡିତ ନୀଳକଣ୍ଠ କହିଥିଲେ—"ପୁରୀର ସଂସ୍କୃତ ମହାବିଦ୍ୟାଳୟ ମୂଳରେ ରହିଛି ପ୍ରାଚୀନ ସଂସ୍କୃତ ବିଦ୍ୟାଳୟ । ସେ ବିଦ୍ୟାଳୟଟି କାହାର କଳ୍ପନା ? କାହାର କୃତି ? ଏହା ମୂଳରେ ରହିଛନ୍ତି ପୂଣ୍ୟଶ୍ଳୋକ ପଣ୍ଡିତ ହରିହର ଦାସ । ଏହା ସ୍ମରଣ କଲେ, ବ୍ୟକ୍ତିଗତ ଭାବରେ ଆଜି ମୋର ଛାତି ଫୁଲି ଫୁଲି ଉଠୁଛି । କାରଣ ସେ ଥିଲେ ଆମ ଗ୍ରାମର, ଆମ ଜାତି ଭାଇ, ମୋ ପିତାଙ୍କର କନିଷ୍ଠ, ମୋର ନମସ୍ୟ ପିତୃବ୍ୟ । ମୋର ଜନ୍ମର ସାଢ଼େ ଦଶ ବର୍ଷ ପୂର୍ବରୁ ତାଙ୍କର ପରଲୋକ । ମୁଁ ତାଙ୍କୁ ଦେଖି ନାହିଁ; କିନ୍ତୁ ମୋ ପିତା ଭାବାବେଶରେ ଗଦ୍‌ଗଦ ହୋଇ କନିଷ୍ଠ ହରିହରର ବିଦ୍ୟା ଓ କୀର୍ତ୍ତିକଳାପ କହିଲାବେଳେ ମୁଁ ସେ ସବୁକଥା ଉପାଖ୍ୟାନ ପରି ବାରମ୍ବାର ଶୁଣିଛି । କଳ୍ପନାରେ ମୁଁ ତାଙ୍କୁ ଯାହା ଦେଖିଛି । ସେଥିରେ ତାଂକ ପରି ଜଣେ କର୍ମଠ, ଉଦାର, ମନସ୍ୱୀ, ପରପ୍ରାଣ, ଦୂରଦର୍ଶୀ ପଣ୍ଡିତ ମୁଁ ଆଉ ଦେଖିଛି ବୋଲି ମନେ ହେଉନାହିଁ ।"

ପଣ୍ଡିତ ହରିହର ତାଙ୍କ ପିତା ଜଗନ୍ନାଥ ଦାସଙ୍କୁ ଶୈଶବରୁ ହରାଇଥିଲେ । ତାଂକର ଭାଇଭଉଣୀ କେହି ନ ଥିଲେ । ହରିହରଂକ ତିରୋଧାନ ପରେ ତାଂକ ସହଧର୍ମିଣୀ ବଂଶରକ୍ଷା ପାଇଁ ଅନ୍ୟ ଏକ ଗ୍ରାମରୁ ବନମାଳୀଙ୍କୁ ପୋଷ୍ୟପୁତ୍ର କରି ଆଣିଥିଲେ । ସେ ମାଟ୍ରିକ ପାଶ କରି ବିଦ୍ୟାଳୟରେ ଶିକ୍ଷକତା କରୁଥିଲେ ।

## ୭୬ । ପଣ୍ଡିତ ହରିହରଙ୍କ ଜନ୍ମପୀଠ :

ବନମାଳୀ ପୁରୀ ଘରେ ରହୁଥିଲେ । ସେ ଘର ବିକ୍ରି କରିବା ପରେ ଶ୍ରୀରାମଚନ୍ଦ୍ରପୁରର ହରିହର ଜନ୍ମପୀଠକୁ ଆଉଟ୍‌ହାଉସ ହରିହର ଦାସଙ୍କୁ ବିକ୍ରି କରିଦେଇ ପୁତ୍ର ରଘୁନାଥଙ୍କ ସହିତ ଅନ୍ୟତ୍ର ଚାଲିଯାଇଥିଲେ ।

Digitized by PPRACHIN, SOA

ଆଡ଼ଭୋକେଟ ହରିହର ଦାସ ଏମ୍. ଏସ୍. ସି. ସତ୍ୟବାଦୀ ପଞ୍ଚସଖାରୁ ଅନ୍ୟତମ ପଣ୍ଡିତ କୃପାସିନ୍ଧୁଙ୍କ କନିଷ୍ଠ ଭ୍ରାତା ଥିଲେ । ସେ ଘର ହରେକୃଷ୍ଣ ପୁରରୁ ପଣ୍ଡିତ ହରିହରଙ୍କ ଦେଉଳାଘରକୁ ପୋଷ୍ୟପୁତ୍ର ହୋଇ ଆସିଥିଲେ । ତାଙ୍କ ନିଜ ଘରର ପୂର୍ବପଟେ ଥିବା ପଣ୍ଡିତ ହରିହରଙ୍କ ଜନ୍ମପୀଠକୁ ନିଜ ଘର ସଙ୍ଗେ ମିଶାଇ ଏକ କୋଠା ନିର୍ମାଣ କରିଥିଲେ ।

ଆଡ଼ଭୋକେଟ୍ ହରିହର ପଣ୍ଡିତ ହରିହରଙ୍କ ଆଦର୍ଶରେ ମଧ୍ୟ ଅନୁପ୍ରାଣିତ ହୋଇଥିଲେ । ସେ ସେତେବେଳର, ସେ ଅଞ୍ଚଳର ବିଜ୍ଞାନରେ ସ୍ନାତକୋତ୍ତର ଉପାଧି ପାଇଥିବା ପ୍ରଥମ ବ୍ୟକ୍ତି । ସେ ସରକାରୀ ଚାକିରି ପ୍ରତି ଆକୃଷ୍ଟ ନ ହୋଇ ଓକିଲାତି ପଢ଼ି ଜଣେ ବିଖ୍ୟାତ ଓକିଲ ଭାବରେ ପାଟନା ହାଇକୋର୍ଟରେ ଓକିଲ (ସେତେବେଳର ଆଡ଼ଭୋକେଟ୍) ହୋଇ ଆଇନ୍ ବ୍ୟବସାୟ କରୁଥିଲେ । ସେ ଜଣେ ଦେଶସେବୀ ଭାବରେ ବିହାର ଓଡ଼ିଶା ବିଧାନସଭାର ସଦସ୍ୟ ହୋଇଥିଲେ । ଦୁର୍ଭାଗ୍ୟକୁ ତାଙ୍କର ଜନ୍ମିତ ପୁତ୍ରସନ୍ତାନ ନଥିବାରୁ ପଣ୍ଡିତ ହରିହରଙ୍କ ପୋଷ୍ୟ-ପୁତ୍ର ପରି ତାଙ୍କ ପୋଷ୍ୟପୁତ୍ର ମଧ୍ୟ ତାଙ୍କର ଗ୍ରାମ୍ୟଘର ଓ ସମ୍ପତ୍ତି ବିକ୍ରୀ କରିଦେଇ ଚାଲିଗଲେ । ସୁଖର କଥା, ହରିହରଙ୍କ ଗୁଣମୁଗ୍ଧ ଶ୍ରୀରାମଚନ୍ଦ୍ରପୁର ଦକ୍ଷିଣ ଖଣ୍ଡି ମହାଜନସଭା ପଣ୍ଡିତ ହରିହରଙ୍କ ସ୍ମୃତିକୁ ଜାଗ୍ରତ ରଖିବାପାଇଁ ସେ ଗୃହକୁ ପୁନଃ କ୍ରୟକରି ତାର ରକ୍ଷଣାବେକ୍ଷଣ ଭାର ହାତକୁ ନେଇଛନ୍ତି ।

## ୨୭ । ହରିହରଙ୍କ ଅବଲୁପ୍ତ ସ୍ମୃତି ସମ୍ଭାର :

ପଣ୍ଡିତ ହରିହର ଛାଡ଼ିଯାଇଥିବା ସ୍ମୃତି ଚିହ୍ନ ସମ୍ବନ୍ଧରେ ପଣ୍ଡିତ ନୀଳକଣ୍ଠ ଲେଖିଛନ୍ତି—ସତ୍ୟବାଦୀ ସ୍ମାରକ ମଧ୍ୟ ହଜିଗଲା—

'ଗ୍ରାମରେ ହରିହରଙ୍କ ଘର ଥିଲା କୁଣ୍ଡାଇବେଣ୍ଟ ସାଇରେ । ଚିତ୍ରକାର ସାଇ ଛକ ଉପରେ ଉତ୍ତର-ପଶ୍ଚିମ ସାଇ ଘର ଧାଡ଼ିରେ ଦୁଇ ତିନି ଘର ଛାଡ଼ି । ତାଙ୍କ ପୋଷ୍ୟପୁତ୍ର ବନମାଳୀ ଦାସ × × ସେଠାରେ ଅନେକ ଦିନ ଥିଲେ । ତାଙ୍କ ବଂଶରେ ଏବେ କେହି ନାହିଁ । × × ×

ତାଙ୍କ ଘରେ ପୁରୁଣା କାଗଜପତ୍ର ଦରାଣ୍ଡି ମୁଁ ହରିହରଙ୍କ କୋଷ୍ଠୀ, ଅନେକ ଚିଠି ପତ୍ର, ଗ୍ରୀକ୍ କବି ସଫୋକ୍ଲିସଙ୍କର ଗୋଟିଏ ନାଟକର ଓଡ଼ିଆ ଅନୁବାଦ (ଇଂରେଜୀରେ ନାଟକର ନାମଟି ହେଉଛି, Edipus the king,) ତୁଳନାତ୍ମକ ଶବ୍ଦତତ୍ତ୍ୱ ଶିଖିବାର ଗୋଟିଏ ଲମ୍ବା ଚଉଡ଼ା ଫର୍ଦ୍ଦ (ସେଥିରେ ଏକା

Digitized by PPRACHIN, SOA

ଶବ୍ଦକୁ ଇଂରେଜି, ଗ୍ରୀକ୍, ଲାଟିନ୍, ଲୋ-ଜର୍ମାନ୍, ହାଇ-ଜର୍ମାନ୍, ଟିଉଟୋନିକ୍, ସ୍ଲାଭୋନିକ, ପାରସିକ, ସଂସ୍କୃତ ପ୍ରଭୃତି ଭାଷାମାନଙ୍କରେ କଅଣ କହନ୍ତି, ସବୁ ଲେଖାଥିଲା । ପ୍ରଥମରୁ ଥିଲା କାଉ (Cow) ଠାରୁ 'ଗୋ' ପର୍ଯ୍ୟନ୍ତ । ଭାଷା ଓ ଭାଷା ବିଜ୍ଞାନ ଶିଖିବାର ଅନ୍ୟାନ୍ୟ କେତେ ଟିପା ଟିପ୍ପଣୀ, ସଂସ୍କୃତ ବିଦ୍ୟାଳୟ ପାଇଁ ଛପା ହୋଇଥିବା ଇଂରାଜି, ହିନ୍ଦି, ଓଡ଼ିଆ, ବଙ୍ଗଳା, ନିବେଦନ ପତ୍ରମାନ ଓ ତାହାଁଙ୍କର ସୁପାରିସ ମାନ, ତାଙ୍କର ଦେଇଥିବା ଓ ପାଇଥିବା କେତେ ଚିଠି ଓ ଏପରି ଆଉ କେତେ କେତେ କାଗଜ ପତ୍ର ପାଇଥିଲି ।

'ଉତ୍କଳ ଦୀପିକା'ରୁ ତାଙ୍କ ରୋଗ ଖବର, ମୃତ୍ୟୁ ଦିବସ ଖବର ସଂଗ୍ରହ କରିଥିଲି । ଗ୍ରୀକରୁ ଓଡ଼ିଆ ଅନୁବାଦ ମିଳାଇ ଦେଖିବା ପାଇଁ ଗ୍ରୀକ କବି ସଫୋକ୍ଲିସଙ୍କ ନାଟକମାନଙ୍କର ଇଂରାଜୀ ଅନୁବାଦ ଗ୍ରନ୍ଥଟି କଲିକତା ପୁରୁଣା ପୁସ୍ତକ ଦୋକାନରୁ କିଣି ଆଣିଥିଲି । କଲିକତାର ସେକାଳ ଇଂରେଜି ସାପ୍ତାହିକ 'ହିନ୍ଦୁ ପେଟ୍ରିୟଟ'ର ତାଙ୍କ ବେଥୁନ କଲେଜ ବକ୍ତୃତା ବିବରଣ ଓ ପ୍ରଶଂସାପୂର୍ଣ୍ଣ ଆଲୋଚନା ଲେଖି ଆଣିଥିଲି ।

ଏ ସବୁ ମଧ୍ୟରେ ସେ ମୟୂରଭଞ୍ଜରୁ ଲେଖିଥିବା ଗୋଟିଏ ଦୀର୍ଘ ଚିଠି ମଧ୍ୟ ପାଇଥିଲି । ସେଥିରୁ ତତ୍କାଳୀନ ଅଦ୍ଭୁତ ଶିକ୍ଷା କଳନା, ରାଜାମାନଙ୍କ ବ୍ୟବହାର, ଲୋକଙ୍କ ଆର୍ଥିକ ଅବସ୍ଥା ଓ ଭବିଷ୍ୟତ ପ୍ରଭୃତି ସମ୍ବନ୍ଧରେ ତାଂକ ଲେଖାରୁ ଯାହା ଜଣାପଡ଼େ, ତା ଏବେ ବିସ୍ମୟକର ବୋଲି ବୋଧ ହୁଅନ୍ତା ।

କିନ୍ତୁ ବଡ଼ ଦୁଃଖର କଥା, ପୁଣ୍ୟ-ଶ୍ଲୋକ ପଣ୍ଡିତ ଗୋପବନ୍ଧୁ ଦାସ, ନିଜେ ହରିହରଂକ ଜୀବନୀ ଲେଖିବେ ବୋଲି ସେସବୁ କାଗଜପତ୍ର ମୋ'ଠୁ ନେଇଥିଲେ । ସେ ସବୁ ସତ୍ୟବାଦୀ ଛାପାଖାନାରେ ଥିଲା । କିନ୍ତୁ ପରେ ଆଉ ମତେ ମିଳିନାହିଁ । ସଫୋକ୍ଲିସଂକ ନାଟକର ଇଂରେଜି ଅନୁବାଦ ପୁସ୍ତକଟି ସେଇ ହରିହରଂକ ନାମରେ ନାମିତ ସତ୍ୟବାଦୀ ସ୍କୁଲ ଲାଇବ୍ରେରୀରେ ମିଳିବ ।

(ଅସହଯୋଗ ଆନ୍ଦୋଳନରେ ପଞ୍ଚସଖା ଓ ସତ୍ୟବାଦୀ ସ୍କୁଲର ଯୋଗଦାନ । ସତ୍ୟବାଦୀ ଛାପାଖାନା, ସତ୍ୟବାଦୀରୁ ପୁରୀ, ପୁରୀରୁ କଟକ ସ୍ଥାନାନ୍ତରୀକରଣ, ସର୍ବୋପରି ପଣ୍ଡିତ ଗୋପବନ୍ଧୁଂକ ଅକାଳ ମୃତ୍ୟୁ ଯୋଗୁଁ ସେସବୁ ସମ୍ପତ୍ତି ଲୁପ୍ତ ହୋଇଯିବାର କାରଣ ହୋଇଥିଲା ।)

Digitized by PPRACHIN, SOA

× × ×

(ପଣ୍ଡିତ ନୀଳକଣ୍ଠଙ୍କ ସଂସ୍କୃତ ଓ ସଂସ୍କୃତି ୧୯୭୨ ସଂସ୍କରଣର ୭୯ ପୃଷ୍ଠା)

## ୭୮ । ହରିହରଙ୍କ ସ୍ମୃତି :

ପଣ୍ଡିତ ହରିହରଙ୍କ ସମ୍ପର୍କିତ ସ୍ମାରକ ହଜିଯାଇଛି, ତଥାପି ତାଙ୍କ ନାମ ଅମର ହୋଇ ରହିଛି । ସେହି ସଭାରେ ସଂସ୍କୃତ କଲେଜର ଛାତ୍ର ଓ ଶିକ୍ଷକଙ୍କୁ ସମ୍ବୋଧନ କରି ନୀଳକଣ୍ଠ କହିଥିଲେ—"ଏ ମହା ଅନୁଷ୍ଠାନର ଆଦି ପ୍ରତିଷ୍ଠାତା ପୁଣ୍ୟଶ୍ଳୋକ ହରିହରଙ୍କ ସ୍ମରଣ ଆଜି ପୁଣି ବିଶେଷ ବାଞ୍ଛନୀୟ । ସେ ଥିଲେ ବଡ଼ ସଂସ୍କୃତ ପଣ୍ଡିତ । କିନ୍ତୁ କି ପରିସ୍ଥିତିରେ ସେ ସଂସ୍କୃତ ଶିକ୍ଷାର ଭବିଷ୍ୟତ ସଙ୍ଗେ ସମାଜ ବିକାଶର କଳ୍ପନା କରି କିପରି କି ବିରାଟ ବିଦ୍ୟାମନ୍ଦିରର କଳ୍ପନା କରିଥିଲେ, ତା ମଧ୍ୟ ଆଜି ସ୍ମରଣୀୟ ।"

ହରିହରଙ୍କ ସ୍ମୃତିସ୍ମରଣରୁ ଏ ଜାତିର ବହୁତ କିଛି ଶିଖିବାର ଅଛି । ପୂର୍ବସୂରୀଙ୍କ ସ୍ମରଣରେ ହିଁ ଜାତି ସମୃଦ୍ଧ ହୁଏ । ଓଡ଼ିଶାର ଅତି ଦୁର୍ଗତି ସମୟରେ ସେହି ଅନ୍ଧକାର ଯୁଗରେ ହରିହର ଯେଉଁ ସାହସିକ ପଦକ୍ଷେପ ନେଇ ସେଥିର ଉଜ୍ଜ୍ୱଳବର୍ତ୍ତିକା ହାତରେ ଧରି ପଥ ପ୍ରଦର୍ଶନ କରିବାକୁ ଚେଷ୍ଟା କରିଥିଲେ ତାହା ପୂର୍ବରୁ ଆଉ କେହି କରିନଥିଲେ ।

ତାଙ୍କର ପ୍ରଦର୍ଶିତ ପଥଧରି ସତ୍ୟବାଦୀର ପଞ୍ଚସଖା ଏ ରାଜ୍ୟରେ ଉପଯୁକ୍ତ ଶିକ୍ଷାବିସ୍ତାରର ଉଦ୍ୟମ କରି ଦେଶକୁ ଆଲୋକିତ କରିଥିଲେ ।

ଦେଶରେ ସ୍ୱାଧୀନ ଚେତନା ଓ ଶିକ୍ଷାପ୍ରସାରର ଆବହମାନ ଭାବରେ ହରିହର ଚିରସ୍ମରଣୀୟ ହୋଇ ରହିଛନ୍ତି ।



ମୁଦ୍ରଣ : ଆନନ୍ଦ ପ୍ରେସ୍, ପିଠାପୁର, କଟକ-୧

Digitized by PPRACHIN, SOA